# ଗୋବିନ୍ଦ ବିଦ୍ୟାଧର

ଐତିହାସିକ ନାଟକ

ପ୍ରଣେତା—

ନାଟ୍ୟଭାରତୀ

ଅଶ୍ୱିନୀ କୁମାର ଘୋଷ, ଏମ୍. ଏ.

ନାଟ୍ୟରତ୍ନାକର, ନାଟ୍ୟସମ୍ରାଟ, ମଞ୍ଚଶ୍ରୀ

ଶଶୀ ପ୍ରକାଶନୀ

ଗଙ୍ଗାମନ୍ଦିର

କଟକ

ଗୋବିନ୍ଦ ବିଦ୍ୟାଧର

ଲେଖକ—
ଅଶ୍ୱିନୀ କୁମାର ଘୋଷ

ପ୍ରକାଶକ—
ଶଶୀ ପ୍ରକାଶନୀ
ଗଙ୍ଗାମନ୍ଦିର
କଟକ

ପଞ୍ଚମ ସଂସ୍କରଣ :
୧୯୭୮



ମୁଦ୍ରାକର :
ମାନସୀ ପ୍ରିଣ୍ଟର୍ସ
ଜଗନ୍ନାଥ ବଲ୍ଲଭ
କଟକ-୧

ମୂଲ୍ୟ—ପାଞ୍ଚଟଙ୍କା

**Gobinda Bidyadhar**

Author
**Aswini Kumar Ghosh**

Publisher :
Sashi Prakashani
Gangamandir
Cuttack

Fifth Edition
**1978**



Rupees—Rs. five only

# ଉତ୍ସର୍ଗ ପତ୍ର

ଓଡ଼ିଶାରେ
ବ୍ୟବସାୟୀ ଭାବେ ନାଟକ ଦଳର
ପ୍ରଥମ ସୃଷ୍ଟିକର୍ତ୍ତା
ଓଡ଼ିଆ ନାଟକର ଉତ୍ସାହ ଦାତା
ମୋର ପିତୃସ୍ଥାନୀୟ, ପରମ ପୂଜନୀୟ,
ବଲଙ୍ଗା ନିବାସୀ
**ଶ୍ରୀଯୁକ୍ତ ବନମାଳୀ ପଣ୍ଡ ମହୋଦୟଙ୍କ**
ଚରଣକମଳରେ
ଭକ୍ତିର ନିଦର୍ଶନ ସ୍ୱରୂପ ଏହି ରାଜଭକ୍ତ
**'ଗୋବିନ୍ଦ ବିଦ୍ୟାଧର'**
ସମର୍ପିତ ହେଲା ।

ଆଶୀର୍ବାଦାକାଙ୍କ୍ଷୀ
**ଅଶ୍ୱିନୀ**

# ମୋ' କଥା

ଓଡ଼ିଶା ଇତିହାସରେ, 'ଗୋବିନ୍ଦ ବିଦ୍ୟାଧର'ଙ୍କ ଚରିତ୍ରକୁ ଏକ ବିଶ୍ୱାସଘାତକ—ଲୋଭୀ—ରାଜଦ୍ରୋହୀ ବୋଲି ଚିତ୍ରଣ କରାଯାଇଛି । ଏତେବଡ଼ ରାଜନୀତିଜ୍ଞ, ନିଷ୍ଠାପର, ମହାରାଜ ପ୍ରତାପରୁଦ୍ର ଦେବଙ୍କ ପ୍ରଧାନ ମନ୍ତ୍ରୀ ଏପରି ହୋଇ ପାରନ୍ତି ବୋଲି ବିଶ୍ୱାସ ହୁଏନା ।

ଇତିହାସରେ ଅନେକ ସ୍ଥଳରେ ଚରିତ୍ର ପ୍ରତି ଯଥାଯଥ ସମ୍ମାନ ଦିଆଯାଇ ନ ଥାଏ ବୋଲି ମୋର ଧାରଣା । ସେଥିପାଇଁ ମୁଁ ଅନ୍ୟାନ୍ୟ ଇତିହାସ ପାଠ କରି ଯାହା ଜାଣିଛି, ସେଥିରେ 'ଗୋବିନ୍ଦ ବିଦ୍ୟାଧର'ଙ୍କ ଚରିତ୍ର ଯେ ଏକ ମହାନ୍ ଆଦର୍ଶ-ସ୍ୱରୂପ ଏଥିରେ ସନ୍ଦେହର ଅବକାଶ ନାହିଁ । ତାଙ୍କପରି ବିଜ୍ଞ, ରାଜନୀତିଜ୍ଞ, ପ୍ରଭୁଭକ୍ତ, ସର୍ବତ୍ୟାଗୀ ମାନବ ଓଡ଼ିଆ ଜାତିର ଗୌରବ । ମୁଁ ସେହି ଚରିତ୍ରକୁ ସାଧାରଣରେ ନାଟକ-ମାଧ୍ୟମରେ ଉପସ୍ଥାପିତ କରିବାର ଆଗ୍ରହକୁ ଦମନ କରି ପାରିଲି ନାହିଁ ।

ବାଖରାବାଦ
କଟକ

ବିନୀତ
ଅଶ୍ୱିନୀ

ରଚନା—୧୯୬୧ ମସିହା ।
ପ୍ରଥମ ପ୍ରକାଶ—୧୯୬୨ ମସିହା ।

---

## — ଚରିତ୍ର ଲିପି —

| | |
|---|---|
| କଲୁଅ ଦେବ | ଉତ୍କଳ-ରାଜ (ପ୍ରତାପରୁଦ୍ରଦେବଙ୍କ ଜ୍ୟେଷ୍ଠପୁତ୍ର) |
| କଖରୁଅ ଦେବ | କଲୁଅଦେବଙ୍କ କନିଷ୍ଠଭ୍ରାତା |
| ଗୋବିନ୍ଦ ବିଦ୍ୟାଧର | ପ୍ରତାପରୁଦ୍ରଦେବଙ୍କ ମନ୍ତ୍ରୀ |
| ଅର୍ଜ୍ଜୁନ ବିଦ୍ୟାଧର | ଗୋବିନ୍ଦଙ୍କ ପୁତ୍ର |
| ବୀରେନ୍ଦ୍ର | ରାଜ-ଘାତକ |
| ରଣଜିତ୍ | ଜନୈକ ପ୍ରଜା |
| ମୁକୁନ୍ଦ | ରାଜ ସେନାପତି |
| ଗୋବର୍ଦ୍ଧନ | ମନ୍ତ୍ରୀଙ୍କ ଶ୍ୟାଳକ |

ସନ୍ନ୍ୟାସୀ, ସୈନ୍ୟଗଣ, ଘାତକ, ପ୍ରଜାଗଣ, ଋଷିଗଣ ଇତ୍ୟାଦି ।

| | |
|---|---|
| ରାଣୀ | ପ୍ରତାପରୁଦ୍ର ଦେବଙ୍କ ବିଧବା ମହିଷୀ |
| ଜଗଦମ୍ବା | ଗୋବିନ୍ଦ ବିଦ୍ୟାଧରଙ୍କ ପତ୍ନୀ |
| ରଙ୍ଗିଲା | ଜନୈକ ରାଜକର୍ମଚାରୀଙ୍କ କନ୍ୟା |
| କମଳା | ଗୋବିନ୍ଦ ବିଦ୍ୟାଧରଙ୍କ କନ୍ୟା |
| ପଦ୍ମା | ରାଜାଙ୍କ ଦାସୀ |

ସଖୀଗଣ, ପ୍ରତିବେଶିନୀ ଇତ୍ୟାଦି ।

## ପ୍ରଥମ ଦୃଶ୍ୟ :—

( ଅନ୍ତଃପୁର )

ରାଣୀ—(ଦୀର୍ଘ ନିଃଶ୍ୱାସ ତ୍ୟାଗ ପୂର୍ବକ) ପାଞ୍ଚବର୍ଷ ପରେ ଆଜ ପୁଣି ସେହିଦିନ ଉପସ୍ଥିତ । ଆକାଶରେ ସୂର୍ଯ୍ୟ ସେହିପରି ଉଜ୍ଜ୍ୱଳ କିରଣ ବିକିରଣ କରୁଛି—ଶୂନ୍ୟରେ ପବନ ସେହିପରି ସ୍ୱେଚ୍ଛାଗତି କରୁଛି—ଅବନୀରେ ପ୍ରକୃତି ସେହିପରି ସୌନ୍ଦର୍ଯ୍ୟ ବିକାଶ କରୁଛି, ମାତ୍ର ଏ ହୃଦୟର ସେ ସୌନ୍ଦର୍ଯ୍ୟ କାହିଁ ?—ଇଚ୍ଛାର ସେ ସ୍ୱାଧୀନତା କାହିଁ ?—ସମସ୍ତ ଯେ ସେହି ରୁଦ୍ରପ୍ରତାପଙ୍କ ଅସ୍ତ ସଙ୍ଗେ ସଙ୍ଗେ ଅସ୍ତମିତ ହୋଇଛି ।

[ କଲ୍ୟାଣ ଓ କଥରୁଦ୍ରଦେବଙ୍କ ପ୍ରବେଶ ]

କଲ୍ୟାଣ ଓ କଥ—ଏହି ଯେ ମା, ଆମ୍ଭେମାନେ ଆସିଛୁ ।

[ ରାଣୀ ସସ୍ନେହରେ ଦୁଇଜଣଙ୍କୁ ନମ୍ରୋକ୍ତଭାବେ କହୁ କହୁ ଦୁଇପାର୍ଶ୍ୱରେ ଛିଡ଼ା କରାଇଲେ ]

ରାଣୀ—ତୁମ୍ଭେମାନେ ଆସିଛ ବୋଲି—ଏ' ନୈଶାକାଶରେ ତୁମ୍ଭେ ଦୁଇଟି ନକ୍ଷତ୍ର ଉଦିତ ହୋଇଛ ବୋଲି, ସଂସାର ସାଗରରେ ଏ ନିଃସହାୟ ନାବିକ ହତାଶ ହୋଇନାହିଁ—ଜୀବନପୋତ ଚଳାଇବାରେ ଏକ ପ୍ରକାର ସକ୍ଷମ ହୋଇଛି ।

କଲ୍ୟାଣ—ମା ! କାହିଁକି ଆମ୍ଭମାନଙ୍କୁ ଡକାଇ ପଠାଇଲ ?

ରାଣୀ—ଜାଣୁ ବାପ, କେଉଁ ଦିନ ଆଜି ?

କଲ୍ୟାଣ—ସ୍ୱର୍ଗୀୟ ପିତାଙ୍କର ସାମ୍ବତ୍ସରିକ ଶ୍ରାଦ୍ଧଦିନ ଆଜି ।

କଥରୁ—ମା, ବାପ କ'ଣ ଆଜି ସ୍ୱର୍ଗରୁ ଆସିବେ ?

ରାଣୀ—( ଦୀର୍ଘନିଃଶ୍ୱାସ ତ୍ୟାଗପୂର୍ବକ ) ସ୍ୱର୍ଗର ଦେବତା କି ପାପମର୍ତ୍ତ୍ୟକୁ କେବେ ଆସେ, ବାପ ? କହ କଲ୍ୟାଣ ତୋର ଆଜି କି କର୍ତ୍ତବ୍ୟ ?

କଲ୍ୟାଣ—ପିତାଙ୍କ ଗୁଣାନୁକରଣରେ ସନ୍ତାନ କେତେଦୂର ସକ୍ଷମ ହୋଇଛି, ତାହାହିଁ ମାତାଙ୍କ ନିକଟରେ ପରୀକ୍ଷା ଦେବା କର୍ତ୍ତବ୍ୟ ।

ରାଣୀ—ପିତାଙ୍କ ପରି କି ହୋଇ ପାରିବୁ, କଲ୍ୟାଣ ?

କଥରୁ—ମା ! ମୁଁ ହୋଇ ପାରିବି । ମୋତେ ମୁକୁଟ ପିନ୍ଧାଇ ଦେ—ସିଂହାସନରେ ବସାଇ ଦେ—ଆଉ ହାତରେ ଗୋଟାଏ ତରଓ୍ୱାଲ ଦେ—ଦେଖିବୁ, ମୁଁ ଠିକ୍ ବାପାଙ୍କ ଭଳି ଦିଶିବି କି ନାହିଁ ?

ରାଣୀ—ଆଚ୍ଛା ଆ, ତୁ ଏହି ସିଂହାସନରେ ବସ, ମୁଁ ତୋତେ ତୋର ଜନକଙ୍କ ମୁକୁଟ ପିନ୍ଧାଇ ଦେଉଛି—ଆଉ ତୋର ସେହି ଲାଲ ତରଓ୍ୱାଲଟି ହାତରେ ଦେଉଛି । (ସସ୍ନେହେ କୋଳକୁ ନେଲେ) । କହି କଲୁ, ସତେ କି ତୋର ପିତାଙ୍କ ପରି ତୁ ହୋଇ ପାରିବୁ ?

କଲୁସ୍ୱ—ମାଗୋ ! ତୁମ୍ଭପରି ସତୀ ଗର୍ଭରେ ଯେବେ ମୋର ଜନ୍ମ ହୋଇଥାଏ—ସେହି ସ୍ୱର୍ଗୀୟ ରାଜର୍ଷି ପିତାଙ୍କ ଶକ୍ତି ଯେବେ ମୋର ଧମନୀରେ ଖେଳୁଥାଏ—ଜଗଦ୍ଗୁରୁ ଜଗନ୍ନାଥ ଯେବେ ସର୍ବଦା ସୁଦୟା ରଖିଥାନ୍ତି, ତେବେ ଏହା ନିଶ୍ଚୟ —ଧ୍ରୁବ ସତ୍ୟ— ପିତାଙ୍କପରି କାହିଁକି, ପିତାଙ୍କଠାରୁ ଆହୁରି ତେଜୀୟାନ୍—ଆହୁରି କୀର୍ତ୍ତିମାନ୍ ହେବି ! ଯେଉଁ ଓଡ଼ିଶାଖଣ୍ଡ ପିତା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ କରିଅଛନ୍ତି, ତାହା ମୁଁ ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ବିସ୍ତୃତ କରିବି—ଯେଉଁ ଶତ୍ରୁମାନଙ୍କୁ ପିତା କେବଳ ରାଜ୍ୟସୀମାରୁ ବହିଷ୍କୃତ କରିଅଛନ୍ତି, ସେମାନଙ୍କୁ ମୁଁ ଇହଧାମରୁ ବହିଷ୍କୃତ କରିବି—ଯେଉଁ ଜାତୀୟତା, ପିତା କେବଳ କ୍ଷୀଣ ତେଜରେ ଜାଗରିତ କରିଅଛନ୍ତି, ତାହା ମୁଁ ଆହୁତି ପ୍ରଦାନରେ କୋଟିସୂର୍ଯ୍ୟତେଜରେ ପ୍ରଦୀପ୍ତ କରିବି । ମା, ମା, ଶକ୍ତିମୟି ! ଏ' କ୍ଷୀଣାଙ୍ଗ ସନ୍ତାନକୁ କେବଳ ତୁମ୍ଭର ପଦରଜ ପ୍ରଦାନ କର—ତୁମ୍ଭର ଆଶୀର୍ବାଦ ପ୍ରଦାନ କର—

[ ଗୋବନ୍ଧର ପ୍ରବେଶ ]

ଗୋବନ୍ଧ—ପିତାର ଉପଯୁକ୍ତ ପୁତ୍ର ! ମା, ସନ୍ତାନକୁ ପଦରଜ ପ୍ରଦାନ କରନ୍ତୁ—ଆଶୀର୍ବାଦ ପ୍ରଦାନ କରନ୍ତୁ !

ରାଣୀ—( କଲୁସ୍ୱକୁ ଧରି ) ବତ୍ସରେ ! ହୃଦୟର ଧନରେ ! ତୋତେ ଯେ ଦେବାରାଜ ଆଶୀର୍ବାଦ କରୁଛି, ବର୍ତ୍ତମାନ ଆଉ ଅଧିକ କି ଆଶୀର୍ବାଦ କରିବି ? ତେବେ ଜଗନ୍ନାଥଙ୍କ ନିକଟରେ ଏତିକି ପ୍ରାର୍ଥନା, ତୁ ଯେପରି ତୋର ପିତାଙ୍କପରି ତାଙ୍କର ଶ୍ରୀଚରଣରେ ଚିରଦାସ ହୋଇ ରହୁ—ତୋର ଯଶଃ ଖ୍ୟାତିର ସୌରଭ ସମଭାବେ ଚତୁର୍ଦ୍ଦିଗ ଆମୋଦିତ କରୁ—

କଥରୁ—ମା, ମୁଁ କିନ୍ତୁ ଦାସ ହେବି ନାହିଁ—ରାଜା ହେବି ।

ଗୋବନ୍ଧ—ରାଜାର ପୁତ୍ର ରାଜା ହିଁ ହୁଏ, ଭାଇ !

କଥରୁ—ଆଚ୍ଛା, ମନ୍ତ୍ରୀଭାଇ, ତୁମେ ମୋର ମନ୍ତ୍ରୀ ହେବ ନା ?

ଗୋବନ୍ଧ—ଏ' ଯେ ଦାସର ପରମ ସୌଭାଗ୍ୟ !—ମାତ୍ର ଏ ବୃଦ୍ଧ କ'ଣ କେତେଦିନ ଯାଏ ବଞ୍ଚିବ, ଭାଇ ?

କଥରୁ—(ନିମ୍ନସ୍ୱରରେ) ମା, ଦେଖିଲୁ, ମନ୍ତ୍ରୀଭାଇ କ'ଣ କହୁଛନ୍ତି ?

ରାଣୀ—ଦେଖ ଗୋବିନ୍ଦ, ତୁମେ ଏପରି କହି କଥ ମନରେ କଷ୍ଟ ଦେବ ନାହିଁ ।

ଗୋବିନ୍ଦ—ମା ! ମା ! ପ୍ରକୃତରେ କି ଏ' ଅଧମ ଦାସ ଆପଣଙ୍କ ଗର୍ଭଜାତ ସନ୍ତାନ !—ଏମାନେ ସହୋଦର ଭ୍ରାତା !—ଆସ ଭାଇ, ଏ ଅକିଞ୍ଚନର କୋଳକୁ ଥରେ ଆସ. (କଥିକୁ କୋଳ କରି ପୁଣି କଲୁସ୍ୟକୁ ପାର୍ଶ୍ୱକୁ ନେଇ) ଆସ, ଭାଇ ଏ କ୍ଷୀଣାଙ୍ଗର ଦକ୍ଷିଣପାର୍ଶ୍ୱକୁ ଥରେ ଆସ । ଯେତେଦିନ ଦେହରେ ଶକ୍ତି ଥିବ—ଯେତେଦିନ ହୃଦୟରେ ସାହସ ଥିବ—ଏ' ବୃଦ୍ଧ ଏହିପରି ଭାଇଙ୍କ ପାଖେ ପାଖେ ରହିବ—ଏହିପରି ଭାଇକୁ କୋଳେ କାଖେ କରି ବୁଲିବ ।

ରାଣୀ—ଗୋବିନ୍ଦ ! ଜ୍ୟେଷ୍ଠ ତନୟ ମୋର ! ତୁମ୍ଭର ହେତୁ ସିନା ଏ' ଅନାଥ କୋରକଦ୍ୱୟ ଆଜି ମୁକୁଳିତ—ରୂପସୌରଭରେ ଏ' ଅନାଥିନୀ-କୋଳ ଆଜି ଆମୋଦିତ —

ଗୋବିନ୍ଦ—ମା ! ଏପରି କହି ଆଶ୍ରିତ ସନ୍ତାନକୁ ଅନ୍ତର କରି ଦେଉଛନ୍ତି କାହିଁକି ? କନିଷ୍ଠ ଭ୍ରାତାମାନଙ୍କ ପ୍ରତି ଜ୍ୟେଷ୍ଠ ଭ୍ରାତାର ଯାହା କର୍ତ୍ତବ୍ୟ, ତାହା ହିଁ ଏ' ଦାସ ପାଳନ କରୁଛି ମାତ୍ର । ମା ! ଆଜି ଗୋଟିଏ କଥା କହିବାକୁ ଆସିଛି—

ରାଣୀ—କି କଥା ?

ଗୋବିନ୍ଦ—କଲୁସ୍ୟଦେବ ବର୍ତ୍ତମାନ ପ୍ରାପ୍ତବୟସ୍କ—ସବୁ ଗୁଣରେ ଅଳଙ୍କୃତ; ସୁତରାଂ ରାଜ୍ୟଶାସନଭାର ସ୍ୱହସ୍ତରେ ଗ୍ରହଣ କରିବାର ଉପଯୁକ୍ତ । ତେଣୁ—

ରାଣୀ—ତେଣୁ, ଯା' କରିବାର ଉଚିତ ରାଜକାର୍ଯ୍ୟ ବିଷୟରେ ପକ୍ୱକେଶ ଗୋବିନ୍ଦ ଉତ୍ତମରୂପେ ଜାଣେ—ଏ' ଜ୍ଞାନହୀନା ବିଧବା ସଙ୍ଗେ ପରାମର୍ଶ କି ପ୍ରୟୋଜନ ?

ଗୋବିନ୍ଦ—ମା ! ଜନନୀ ଯେ ସ୍ୱଭାବତଃ ବୁଦ୍ଧିମତୀ ଜ୍ଞାନମୟୀ—ପୁତ୍ର ଯେତେ ଜ୍ଞାନୀ ହେଉ—ଯେତେ ବିଚାରଶୀଳ ହେଉ, ମାତାଠାରୁ ତା'ର ବିଚାରଶକ୍ତି ନିଶ୍ଚୟ ଅଳ୍ପ—ମାତାଠାରୁ ତା'ର ଜ୍ଞାନ ଓ ବୁଦ୍ଧି ନିଶ୍ଚୟ କମ୍ । ମାତାର ଉପଦେଶ ବିନା—ମାତାର ଆଦେଶ ବିନା, ପୁତ୍ରର କି କୌଣସି କାର୍ଯ୍ୟ କରିବା ବିଧେୟ ?

ରାଣୀ—ଗୋବିନ୍ଦ ! ତୁମ୍ଭ ସହିତ କଥାରେ ପାରିବା ଦୁରୂହ—ତୁମ୍ଭର ଇଚ୍ଛା ପୂର୍ଣ୍ଣ ହେଉ ।

କଲୁସ୍ୟ—ମା ! ଏ' ଶିଶୁ-ମସ୍ତକରେ ଆଜି ଯେଉଁ ବିଶାଳଭାର ଅର୍ପଣ କରୁଛନ୍ତି, ତାହା କି ସେ ଏକାକୀ ବହନ କରିବାକୁ ସକ୍ଷମ ?

ରାଣୀ—ତୋର ଜ୍ୟେଷ୍ଠ ସହୋଦର ତୁଲ୍ୟ ଗୋବିନ୍ଦ ଯେ ସହାୟ ଅଛନ୍ତି—ଚିନ୍ତା କଣ ?

କଲୁଆ—ଏଥର ମୁଁ ନିଶ୍ଚିନ୍ତ, ମା ! ଉପରେ ଗୋବିନ୍ଦ ଭରସା···ନିମ୍ନରେ ମଧ୍ୟ ଗୋବିନ୍ଦ ଭରସା !

ଗୋବିନ୍ଦ—କଲୁସ୍ୟ ଦେବ !

କଲୁସ୍ୟ—ମନ୍ତ୍ରୀଭାଇ !

ଗୋବିନ୍ଦ—ଏ'ତ ପ୍ରତାପରୁଦ୍ର-ତନୟର ଉପଯୁକ୍ତ କଥା ହେଲା ନାହିଁ ?

କଲୁୟ—କାହିଁକି ନୁହେଁ, ଭାଇ ?

ଗୋବିନ୍ଦ—'ଉପରେ ଗୋବିନ୍ଦ ଭରସା' ନିଶ୍ଚୟ—ମାତ୍ର ନିମ୍ନରେ କିଏ ତା'ର ଭରସା ? କିଏ କା'ର ସହାୟ ?—କାହାର ବାହୁବଳରେ ତୁମ୍ଭର ପିତା ଓ ପ୍ରପିତାମହଗଣ ଆଜି କ୍ଷୀଣକାୟ ଉତ୍କଳଭୂମିର କଳେବର ବୃଦ୍ଧି କରି ଯାଇ ଅଛନ୍ତି ? କାହାର ଧର୍ମ-ପ୍ରଭାବରେ ଆଜି ସେମାନେ ପୀଡ଼ିତ ଉତ୍କଳଭୂମିକୁ ସୁଖ-ଶାନ୍ତିର ନିଳୟ କରି ଯାଇଅଛନ୍ତି ?—ସମସ୍ତ ହିଁ ତାଙ୍କର ନିଜର ଧର୍ମ ଓ ବାହୁବଳରେ କଲୁୟ ଦେବ ! —ତୁମ୍ଭେ ସେହି ଆତ୍ମ ନିର୍ଭରଶୀଳ କର୍ମ-ବୀରମାନଙ୍କର ତନୟ—ତୁମ୍ଭେ ସେହି ସ୍ୱାଧୀନଚେତା ବୀରପୁରୁଷଗଣଙ୍କ ବଂଶଧର—ତୁମ୍ଭର ଧମନୀରେ ସେମାନଙ୍କର ଉତ୍ତପ୍ତ-ରକ୍ତ ପ୍ରବାହ ଅଦ୍ୟାପି ଭୀମବେଗରେ ଧାବିତ ହେଉଅଛି—ତୁମ୍ଭର ଅସ୍ଥି ମଜ୍ଜାରେ ସେମାନଙ୍କର ଅପ୍ରତିହତ କ୍ଷତ୍ରିୟ-ତେଜ ଅଦ୍ୟାପି ବିଦ୍ୟୁଲ୍ଲତା ସମ କ୍ରୀଡ଼ା କରୁଅଛି— ଜାଗ ! ନିଜର ଅଭ୍ୟନ୍ତରକୁ ସୂକ୍ଷ୍ମ ଦୃଷ୍ଟିରେ ପରିମାପ କରି ଦେଖ—ଯେଉଁ ସିଂହାସନକୁ ତୁମ୍ଭେ ଆଜି ଅଳଙ୍କୃତ କରିବାକୁ ଯାଉଅଛ, ତାହା କେତେ କ୍ଷୁଦ୍ର, ତୁମ୍ଭର ଉଚ୍ଚାଭିଳାଷ ତାହାଠାରୁ କେତେ ବେଶି ! ଯେଉଁ କର୍ମକ୍ଷେତ୍ରରେ ତୁମ୍ଭେ ଆଜି ଅବତୀର୍ଣ୍ଣ ହେବାକୁ ଯାଉଅଛ, ତାହା କେତେ ସଂକୀର୍ଣ୍ଣ, ତୁମ୍ଭର ଶକ୍ତି ତଦପେକ୍ଷା କେତେ ବିଶାଳ !

କଲୁୟ—ତୁମ୍ଭେହିଁ ମୋର ଗୁରୁ—ତୁମ୍ଭେହିଁ ମୋର ଉପଦେଷ୍ଟା, ମନ୍ତ୍ରୀଭାଇ ! (ଜାନୁପାତ ପୂର୍ବକ) ଆଶୀର୍ବାଦ କର, ମା—ଆଶୀର୍ବାଦ କର, ସ୍ୱର୍ଗୀୟ ପିତୃଦେବ ! ଉତ୍ତରାଧିକାରୀ ବୋଲି ଯେଉଁ ସିଂହାସନ ଆଜି ପ୍ରକୃତରେ ଆରୋହଣ କରିବାକୁ ଯାଉଅଛି, ତାହା ଯେପରି ନିଜର ଶକ୍ତି ପ୍ରୟୋଗରେ ଉତ୍ତରୋତ୍ତର ବୃଦ୍ଧି କରେଁ—ରାଜା ବୋଲି ଯେଉଁ ରାଜମୁକୁଟ ଆଜି ପ୍ରକୃତରେ ଧାରଣ କରିବାକୁ ଯାଉଅଛି, ତାହା ଯେପରି ନିଜର ଧର୍ମ-ପ୍ରଭାବରେ ଦିନୁଁ ଦିନୁଁ ଉଜ୍ଜ୍ୱଳତର କରେଁ—ବୀର ବୋଲି ଯେଉଁ କ୍ଷୁରଧାର-କୃପାଣ ଆଜି ପ୍ରକୃତରେ କଟିଦେଶରେ ଲମ୍ବିତ କରିବାକୁ ଯାଉଅଛି, ତାହା ଯେପରି ନିଜର ବିବେଚିତ ବ୍ୟବହାରରେ ଅଧିକତର ଶାଣିତ କରେଁ ।

ଗୋବିନ୍ଦ—ଜୟ ମହାରାଜ କଲୁୟଦେବଙ୍କ ଜୟ !

[ କଲୁୟଦେବ ଦଣ୍ଡାୟମାନ ହେଲେ ]

କଥ—ମୋ'ର ଜୟ, ମନ୍ତ୍ରୀଭାଇ ?

ଗୋବିନ୍ଦ—(ସସ୍ମିତେ) ଜୟ ମହାରାଜ କଥରୁୟ ଦେବଙ୍କ ଜୟ !

(ନେପଥ୍ୟେ)—ଜୟ ମହାରାଜ କଲୁୟଦେବଙ୍କ ଜୟ !

ଗୋବିନ୍ଦ—ଏହି ଯେ, ମା—ସଭାର ନିର୍ଦ୍ଧାରଣ ମତେ, ସମସ୍ତେ ଆଜି କଲ୍ୟାଣଦେବଙ୍କୁ ପ୍ରକୃତ ରାଜପଦରେ ବରଣ କରିବା ନିମନ୍ତେ ସଭାଗୃହରେ ମିଳିତ ହେଲେଣି ।

ରାଣୀ—ଗୋବିନ୍ଦ ! ଆଜି କି ଆନନ୍ଦର ଦିନ—ପୁଣି—

ଗୋବିନ୍ଦ—ଅତୀତ ଚିନ୍ତା ମନରେ ଆଉ ଆଣନ୍ତୁ ନାହିଁ, ମହାରାଣୀ !

ରାଣୀ—ଉଚିତ ମଧ୍ୟ ନୁହେଁ—ଚାଲ ବାପା, ତୁ ରାଜସିଂହାସନରେ ଆଜି ରାଜଦଣ୍ଡ ଧରି ବସିବୁ—ତୋ'ର ଦୁଃଖିନୀ ଜନନୀ ସେ ଦୃଶ୍ୟ ଦେଖି ନୟନ-ମନ ସାର୍ଥକ କରିବ, ତାପିତ ପ୍ରାଣ ଶୀତଳ କରିବ ।

କଥ—ମା ! ମୁଁ ସିଂହାସନରେ ବସିବି ନାହିଁ ?

ରାଣୀ— ଏ' ସିଂହାସନର କାମ ଆଗେ ଶେଷ କରିସାର, ବାପ !

[ କଥକୁ କାଖ କରିବା ଓ ସମସ୍ତଙ୍କ ପ୍ରସ୍ଥାନ ]

—:O:—

ଦ୍ୱିତୀୟ ଦୃଶ୍ୟ :—

( ଗୋବର୍ଦ୍ଧନର କକ୍ଷ )

[ ଜଗଦମ୍ବା ଓ ଗୋବର୍ଦ୍ଧନ ]

ଗଜଦମ୍ବା—ଗୋବର୍ଦ୍ଧ ! ତୁ କେବେ ମଣିଷ ହେବୁଟି ?

ଗୋବର୍ଦ୍ଧନ—କାହିଁକି, ଅପା ! ମୁଁ କଣ ବର୍ତ୍ତମାନ ପଶୁ ?

ଜଗଦମ୍ବା—ପଶୁଠାରୁ ବ ଆହୁର ହୀନ ! ସାମାନ୍ୟ ପିମ୍ପୁଡ଼ି—ସେ ବ ଦେଖ, ପେଟ ସକାଶେ ଦନ ରାତ ଖଟୁଛ—ଆଉ ତୁ—

ଗୋବର୍ଦ୍ଧନ—ମୋ'ର ତ ଆଉ ପେଟର ଚନ୍ତା ନାହିଁ, ଅପା ?

ଜଗଦମ୍ବା—ସବୁଦନ କଣ ଏହପର ଚଳୁଥିବ ?

ଗୋବର୍ଦ୍ଧନ—ଅପା ଥିବା ଯାଏ ତ ଚଳୁଥିବ ।

ଜଗଦମ୍ବା—ତା'ପର ?

ଗୋବର୍ଦ୍ଧନ—ତା'ପର ଗୋବର୍ଦ୍ଧନ ଯେବେ ଖତମ୍—

ଜଗଦମ୍ବା—(କାନରେ ଅଙ୍ଗୁଳ ଦେଇ) ରାମ୍-ରାମ୍-ରାମ୍—

ଗୋବର୍ଦ୍ଧନ—କଥା ଯେବେ ପକାଇଲୁ, ଅପା ! ତେବେ ଠିକ୍ ଜାଣିଥା—ତୋ ଆଗେ ଯେବେ ଯାଏଁ ତ ଉତ୍ତମ, ତା ନ ହେଲେ ତୋ' ସଙ୍ଗେ ସଙ୍ଗେ ପିବାଟି ନଶ୍ଚୟ—ନଶ୍ଚୟ—ନଶ୍ଚୟ !

ଜଗଦମ୍ବା—ରାମ-ରାମ୍-ରାମ୍—ପୁଣି ସେହ କଥା ? ( କାନରୁ ଅଙ୍ଗୁଳ କାଢ଼ିନେଇ ) ଛିଃ-ଛିଃ-ଛିଃ—ଗୋବର୍ଦ୍ଧ, ତୁ ଏଡ଼େଟି ହେଲୁଣି—ଟିକଏ ହେଲେ ତୋର ଅକଲ ହେଲ ନାହିଁ ?—ହାୟ ! ପିତୃକୁଳରେ ଗୋଟିଏ ବୋଲ ସନ୍ତାନ ତୁହ—ତୁ ପୁଣି ଏପର ହେଲୁ ! ମା ଭଗବତ ! ଗୋବର୍ଦ୍ଧକୁ ଆମର ସଦ୍‌ବୁଦ୍ଧି ଦଅ, ମା—

ଗୋବର୍ଦ୍ଧନ—ସେ ବର ପଛେ ମାଗିବୁ, ଅପା ! ତୋତେ ଯେଉଁ ବର ମାଗୁଛ, ତା ଆଗେ ଦେଇସାରକ—ତା' ପର୍ ଖାସ୍ ଦରକାର୍, ଖାସ୍ ଜରୁର୍—

ଜଗଦମ୍ବା—ନତ ନତ ଭଲ ଟଙ୍କା ଗୁଡ଼ାଏ କାହିଁକି ଉଡ଼ାଉଛୁ ? ଆଜ ପୁଣି ଏତେ ଗୁଡ଼ାଏ ଟଙ୍କା କ'ଣ କରବୁ ?

ଗୋବର୍ଦ୍ଧନ—କଣ କରବ, ଅପା ? ଆଜ ଆଉ ଟଙ୍କା ନ ଉଡ଼ାଉ°—ପାଞ୍ଚ ଟଙ୍କା ଯେବେ ପାଞ୍ଚ ତୋଡ଼ା ହୋଇ ଘରେ ଆଜ ନ ପଶୁଛ, ତେବେ ଏ' ମୁଛ— . . .

ଜଗଦମ୍ବା—ଆଉ-ଆଉ—ମୁଛ ଓପାଡ଼ବାର ଦରକାର ନାହିଁ, କ ପାଞ୍ଚ ଗୁଡ଼ ପାଞ୍ଚଶ' ହେଲେ ବ ମୋ'ର ତୋଡ଼ାର ଦରକାର ନାହିଁ ।—ଗୋବର୍ଦ୍ଧ ରେ ! ଭାଇରେ !

ଧନ ରେ ! ତୁ କଥା ଶୁଣ, ସେ ଜୁଆଖେଳ ଛାଡ଼ିଦେ । ତୁ ପଛେ କିଛି ନ କର—ସେ ଖରାପ ଖେଳରେ ଆଉ ମାତ ନାହିଁ, କି ସେ ଖରାପ ସାଙ୍ଗରେ ଆଉ ପଡ଼ ନାହିଁ ।

ଗୋବର୍ଦ୍ଧନ—ତେବେ ଭଣ୍ଡି ମୋର କାଟି ଦେ, ଅପା—ଭଣ୍ଡିମୋର—

ଜଗଦମ୍ବା—(କାନରେ ହାତଦେଇ) ରାମ୍, ରାମ୍—(ଆଙ୍ଗୁଳି କାମୁଡ଼ି ନେଇ) ତୋ ମୁହଁରେ କଣ ଟିକିଏ ହୋଇ ବାଇମ ନାହିଁ, ଗୋବରା ? ସେ ଅଲକ୍ଷଣା କଥା କଣ ତୋ' ଜିଭ ଆଗରେ ଥିଆ ? ଏଣିକି ଆଉ ତୋତେ କିଛି କହିବି ନାହିଁ—କି ସେ ଅମଙ୍ଗଳିଆ କଥା ଶୁଣିବି ନାହିଁ ! (ଅର୍ଦ୍ଧ ସ୍ୱଗତ) ହାୟ ! ମା-ବାପା ଥିଲେ କଣ ତୁ ଆସି ଆଜି ପରଘରେ ରହନ୍ତୁ ଗୋବରା ?—ତୋର ଏପରି ଦଶା ହୁଅନ୍ତା ଗୋବରା ?

ଗୋବର୍ଦ୍ଧନ—କଣ କହୁଛୁ, ନାନି—ସାରା କଥା, ଦେବୁ କି ନାହିଁ ? ନ ଦେଲେ, ଯାଉଛି ଅଣ୍ଟାସୂତା ବନ୍ଧା ପକାଇ ବାଜିମାତ୍ କରିବି—ଆଜି ମୋର ବୃଧ-ବୃହସ୍ପତି ଯୋଗ—ଅବଧାନ କହିଛି, ଆଜି ଯାହା ଖେଳିବି, ଶହେ ଗୁଣ ହୋଇ ଆସିବ—ଏମିତି ସୁଯୋଗ କି ଛାଡ଼ିବାକୁ ଅଛି :

ଜଗଦମ୍ବା—ଏହି ଅବଧାନ ଦେଖୁଛି, ସବୁ ସତ୍ୟାନାଶର ମୂଳ ! ତା'ର ଶିକ୍ଷାରେ ପଡ଼ି ଗୋବରା ମୋର ସତ୍ୟାନାଶ ହେବାକୁ ଗଲଣି । —ଥରେ ସେ ନିରର୍ଥିଆ ଦେଖା ପଡ଼ନ୍ତା କି—ଝାଡ଼ୁପିଟାରେ ପରା ତାର ଅବଧାନଗିରି ଛଡ଼ାଇ ଦିଅନ୍ତି !

ଗୋବର୍ଦ୍ଧନ—ନାନି ! ସେ ଅବଧାନକୁ ନିନ୍ଦା କର ନାହିଁ—ସେ ଯାହା କୁହେ ତାହା ଫଳେଟି !

ଜଗଦମ୍ବା—ମୁଣ୍ଡ ଗଣ୍ଡି ଫଳେ ।

ଗୋବର୍ଦ୍ଧନ—ଦେଖିବୁ ନାହିଁ, ନାନି—ତୁ ଯେତେବେଳେ ରାଣୀ ହେବୁ—ଭେଣେଇ ଯେତେବେଳେ ରାଜା—

(ନେପଥ୍ୟେ ଗୋବିନ୍ଦକୁ ଦେଖି ଚମକି ପଡ଼ିବା)

[ ଗୋବିନ୍ଦର ପ୍ରବେଶ ]

ଗୋବିନ୍ଦ—ରାଜା ଆଜି ଗୋବିନ୍ଦଙ୍କ—

ଗୋବର୍ଦ୍ଧନ—ଦେଖ୍ ନାନି—ଅବଧାନ କଥା ଫଳିଲା କି ନାହିଁ ? ଜୟ ରାଜା ଭେଣେଇଙ୍କର ଜୟ—ଜୟ ରାଣୀ ନାନୀଙ୍କର ଜୟ ! —ଜୟ ରାଜଶାଳକ ଗୋବର୍ଦ୍ଧନର ଜୟ !

[ ଗୋବିନ୍ଦ ଭ୍ରୂକୁଞ୍ଚିତ ନୟନରେ ଗୋବର୍ଦ୍ଧନକୁ ଅନାଇବା । ]

ଗୋବର୍ଦ୍ଧନ—ଆଉ କଣ ଗୋବର୍ଦ୍ଧନ କାହାକୁ ଡରୁଛି ?—ଭୈରୋଇ ତା'ର ରାଜା—ନାନୀ ତାର ରାଣୀ—ଏ କେ ସେ ରାଜ ଶାଳକ !

ଗୋବନ୍ଧୁ—ଗୋବର୍ଦ୍ଧନ !

ଗୋବର୍ଦ୍ଧନ—ଅବଧାନ କଣ କେବେ ମିଛ କୁହେ ? ଦେଖ ନାନ, ଅବଧାନ କଥା ଫଳିଲା କି ନାହିଁ ?

ଗୋବନ୍ଧୁ—(ସ୍ୱଗତଃ---ବିରକ୍ତଭାବେ) ଆଜି ପୁଣି ସେହି ଅବଧାନ କଥା ! ସେହି ଜ୍ୟୋତଷୀ କଥା !—(ପ୍ରକାଶ୍ୟେ ବିରକ୍ତଭାବେ) ଗୋବର୍ଦ୍ଧନ ! (ପରେ) ଶୁଣ ଜନନୀ ବୌ, ଆଜିଠାରୁ କଳ୍ପବୃଦେବ ନିଜ ହାତରେ ଶାସନଭାର ଗ୍ରହଣ କଲେ—ମୁଁ ଏକ ମହା-ଦାୟିତ୍ୱ ଭାରରୁ ରକ୍ଷାପାଇଲି ।

ଜଗଦମ୍ବା—ଯାହାହେଉ, ଆମ୍ଭମାନଙ୍କର ଗୋଟିଏ ମହାଚନ୍ତା ତେବେ ଦୂର ହେଲା ।

ଗୋବର୍ଦ୍ଧନ—(ସ୍ୱଗତଃ) ମୋ'ର ଯେ ମହାଚନ୍ତା ବଢ଼ିଲା !——ଭୈରୋଇ ରାଜା ହେଲେ ନାହିଁ, ରାଜ୍ୟଭାର ଛାଡ଼ିଦେଲେ, ନାନୀ ରାଣୀ ହେଲା ନାହିଁ—ଗୋବର୍ଦ୍ଧନ ନିଜକୁ ରାଜ-ଶାଳକ ବୋଲି ଚହ୍ନାଇଲା ନାହିଁ ! ସବୁ ଯେ ଭଣ୍ଡୁର ହୋଇଗଲା—ଅବଧାନ କଥା କଣ ତେବେ ମିଛ ହେଲା ?—ଆମ୍ଭେମାନେ ତ ଲୋକ ହାତେ ହାତେ ଫଳ ପାଇ ଆସୁଛୁଁ । ନାଁ—ଅବଧାନ କଥା ନିଶ୍ଚୟ ସତ—ନିଶ୍ଚୟ ଭୈରୋଇ ରାଜା—ନିଶ୍ଚୟ ନାନୀ ରାଣୀ—ନିଶ୍ଚୟ ଗୋବର୍ଦ୍ଧନ ରାଜ-ଶାଳକ—

ଗୋବନ୍ଧୁ—ନିଜେ ନିଜେ କଣ ବକୁଛୁ, ପାଗଳ ?

ଜଗଦମ୍ବା—ତା' କଥା ଭଲ ପଗ୍ଭରୁନ—ସେହି କଥା ବୋଧ ହୁଏ ଭାବୁଥିବ । କିଏ ସେ ଅବଧାନ କେଜାଣି—ଏଣୁ ତେଣୁ କହି ଗୋବରାର ମୁଣ୍ଡ ବିଗାଡ଼ି ଦେଲାଣି—

ଗୋବନ୍ଧୁ—ଅଳସୁଆ ଲୋକଙ୍କର ତ ସେପରି କଥାରେ ମୁଣ୍ଡ ବିଗିଡ଼ିବାର କଥା—ସାବଧାନ, ଗୋବର୍ଦ୍ଧନ ! ଅଦୃଷ୍ଟବାଦର କୌଣସି କଥା ଘୃଣାକ୍ଷରେ ମୋ ନିକଟରେ ଆଉ ଯେପରି କେବେ ଉଚ୍ଚାରିତ ନ ହୁଏ !

ଗୋବର୍ଦ୍ଧନ—(ସ୍ୱଗତଃ) ଅବଧାନ କଥା କଣ ତେବେ ମିଛ ହେଲା ?

ଗୋବନ୍ଧୁ—ଆସ, ଜନନୀ ଆବୌ ! ଏହି ଦୀର୍ଘ ପାଞ୍ଚବର୍ଷରେ ଆଜି ଆମ୍ଭେମାନେ ରାଜା ପାଇଛୁ, ଅନାଥ ସନ୍ତାନଗଣ ଆଜି ନାଥ-ଯୁକ୍ତ ହୋଇଛନ୍ତି—ଏହିପରି ଆନନ୍ଦ ଦିନରେ ରାଜଭକ୍ତ-ପ୍ରଜାଗଣଙ୍କ ଯାହା କର୍ତ୍ତବ୍ୟ, ତାହାହିଁ କରିବା ଆସ—

[ ଗୋବନ୍ଧୁର ପ୍ରସ୍ଥାନ ]

ଗୋବର୍ଦ୍ଧନ—(ସ୍ୱଗତ) ଅବଧାନ କଥା କଣ ମିଛ ହେଲା ?

ଜଗଦମ୍ବା—ଆ, ଗୋବରା—ତୋର କପାଳ ଆଜି ଫିଟିଛି--ପାଞ୍ଚଟଙ୍କା ମାଗୁଥିଲୁ—ଦଶଟଙ୍କା ବକ୍‌ସିସ୍ ପାଇବୁ ।

ଗୋବର୍ଦ୍ଧନ—(ସ୍ୱଗତଃ) ଆଉ ବକ୍‌ସିସ୍—ଅବଧାନ କଥା ମିଛ ହେଲା ? .

ଜଗଦମ୍ବା—ଆ, ପାଗଳ !

ଗୋବର୍ଦ୍ଧନ—ବାସ୍ତବିକ୍ ମୁଁ ପାଗଳ ହୋଇ ଗଲିଣି !—ଅବଧାନ କଥା ମିଛ ହେଲା ?—ଅବଧାନ କଣ ଭୁଲ ଗଣିଛୁ ?—ସେ ତ ଭୁଲ ଗଣେ ନାହିଁ—ତେବେ କାହିଁକି ଏପରି ହେଲା ?—ଏହିକ୍ଷଣି ଯାଉଛୁ, ପୁଣି ଗଣାଇବି—ଦେଖିବି, ଅବଧାନ ପାଗଳ, କି ମୁଁ ପାଗଳ କି ଅପର ସମସ୍ତେ ପାଗଳ ?

[ ବେଗେ ପ୍ରସ୍ଥାନ ]

—:o:—

ଦ୍ୱିତୀୟ ଦୃଶ୍ୟ :—

( ସଦର ଦ୍ୱାର )

[ ଅର୍ଜ୍ଜୁନ ପ୍ରବେଶ କରି ]

ଅର୍ଜ୍ଜୁନ—ଆଜିତ ନଗରରେ ଭାରି ଧୂମ ଧାମ୍ ଦେଖୁଛି ! ସଙ୍ଗୀତ ସ୍ୱହସ୍ତରେ ରାଜ୍ୟଭାର ନେଉଛନ୍ତି ବୋଲି ଏତେ ଆନନ୍ଦ !—ଯାହା ହେଉ, ମୋର ପରମ ସୌଭାଗ୍ୟ ଯେ, ଆଜି ଏହି ଉତ୍ସବବାଦନରେ ଗୁରୁ-ଗୃହ କାର୍ଯ୍ୟ ସମାପନ କରି ଘରକୁ ଫେରି ଆସିଛି । ଏହି ମୋର ଘର - ମୋର ଜନ୍ମସ୍ଥାନ—ବହୁଦିନ ପରେ ଆଜି ଏଠାରେ ପ୍ରଥମ ପଦାର୍ପଣ ବୋଲି ମନରେ କି ଆନନ୍ଦ ହେଉଛି, ସଙ୍ଗୀତ ବୋଧହୁଏ ମଣିମୟ-ସିଂହାସନରେ ଆଜି ପ୍ରକୃତ ରାଜାରୂପେ ଉପବେଶନ କରି ଏତେଦୂର ଆନନ୍ଦ ଉପଭୋଗ କରୁ ନଥିବେ !—ଆଜି ନର୍ତ୍ତକୀମାନଙ୍କ ସୁମଧୁର କଣ୍ଠଧ୍ୱନିରେ ନଗର ମୁଖରିତ, ମାତ୍ର ବହୁଦିନୁଁ ଅଶ୍ରୁତ ପିତାମାତାଙ୍କର ପ୍ରେମମୟୀସମ୍ଭାଷଣ ତୁଳନାରେ ସେ ସଙ୍ଗୀତ ମୋତେ କର୍ଣ୍ଣକଟକର ବୋଧ ହେବ !—ସମସ୍ତ ନଗରବାସୀ ପୁଣି ନାନା ସୁସ୍ୱାଦୁ ଲେହ୍ୟ ପେୟରେ ବିମୁଗ୍ଧ, ମାତ୍ର ସେ ସମସ୍ତ ଖାଦ୍ୟ କି ବହୁଦିନ ଅଭୁକ୍ତ ପିତାମାତା, ଭାଇବନ୍ଧୁଙ୍କର ସ୍ନେହ-ସୁଧା ସଙ୍ଗ ସମାନ ହେବ ? ଅସମ୍ଭବ—ଯାଏ, ସ୍ୱର୍ଗଧାମରେ ପ୍ରବେଶ କରେ—ଅମୃତାସ୍ୱାଦନ କରି ପିପାସିତ ପ୍ରାଣ ତୃପ୍ତି କରେ—

[ ପ୍ରସ୍ଥାନୋଦ୍ୟତ ହେବାକାଳେ ଗୋବର୍ଦ୍ଧନର ପଶ୍ଚାଦ୍ଦିଗରୁ ପୁନଃ-ପ୍ରବେଶ ]

ଗୋବର୍ଦ୍ଧନ—ବାଃ, ବାଃ ! ସିଧା ସିଧା ଘର ଭିତରକୁ ପଶି ଯାଉଛନ୍ତି, ଯେମିତି ଘରର ଜୋଇଁ ପୁଅ । ଆହେ କଉପୀନଧାରୀ ରସିକ ଶେଖର ! ଏ'ଟା ପିତୃଗୃହ ନୁହେଁ କି ଶ୍ୱଶୁରମନ୍ଦିର ନୁହେଁ ।

ଅର୍ଜ୍ଜୁନ—କିଏ ଆପଣ ?

ଗୋବର୍ଦ୍ଧନ—ଚେହେରା ଦେଖି ଜାଣି ପାରୁନାହାନ୍ତି ଆପଣ ?

ଅର୍ଜ୍ଜୁନ—କ୍ଷମାକରନ୍ତୁ—ମୁଁ ତ ଆପଣଙ୍କୁ ଚିହ୍ନି ପାରୁନାହିଁ ।

ଗୋବର୍ଦ୍ଧନ—ଚିହ୍ନିବେ କିପରି, ଆମେ ଥିଲାବେଳେ ତ ଆପଣଙ୍କର ଗତାୟତ ନ ଥାଏ ?

ଅର୍ଜ୍ଜୁନ—ଆପଣ କଣ ତେବେ ମନେ କରୁଛନ୍ତି, ମୁଁ ଚୋର ?

ଗୋବର୍ଦ୍ଧନ— ରାମଚନ୍ଦ୍ରଃ, ଆପଣ ସାଧୁ—ସଦ୍‌ବଂଶଜ—ହେବନ— ଯେତେ ଅଳଙ୍କାର ଅଛି, ସବୁ-ପିଙ୍କାଜନ ।

ଅର୍ଜ୍ଜୁନ—ଏ' ଯେ ଆମର ନିଜ ଘର !

ଗୋବର୍ଦ୍ଧନ—ନିଶ୍ଚୟ—ତା'ତ ମନେ କରିବେ । ଆପଣଙ୍କ ପରି ସାଧୁ ଲୋକର କି ଆଉ ଆମ୍ଭ ପର ଜ୍ଞାନ ଥାଏ—ସୁ ଦୃଷ୍ଟି ପଡ଼ିଲା ମାତ୍ରକେ ଯେ ସବୁ ଆପଣାର କରି ନିଅନ୍ତି ! ଆଚ୍ଛା, ବେଶ୍ ବେଶ୍—ବର୍ତ୍ତମାନ ମହାଶୟ, ଟିକିଏ ଅନୁଗ୍ରହ କରି ବିଦାୟ ହେବେ କି ? ମୋର ଗୋଟାଏ ଜରୁରୀ କାମ ଅଛି, ତା' ନ ହେଲେ ଅତିଥି ସତ୍କାରଟା ଉତ୍ତମରୂପେ ଦେଖାଇ ଦିଅନ୍ତି ।—କି ? ଚୁପ୍ କରି ଛିଡ଼ା ହେଲେ ଯେ ?

ଅର୍ଜ୍ଜୁନ—ମୁଁ ତ କିଛି ବୁଝିପାରୁ ନାହିଁ ।

ଗୋବର୍ଦ୍ଧନ—ତେବେ କ'ଣ ନିତାନ୍ତ ବୁଝିବେ ?—ଆରେ ନଖିନା ! ନଖିନା—

[ ଗୋବିନ୍ଦ ଓ ଜଗଦମ୍ବାର ପ୍ରବେଶ ]

ଜଗଦମ୍ବା—ଗୋବରି ! କଣ ହୋଇଛି ?

ଗୋବର୍ଦ୍ଧନ—ଦେଖ ଦେଖ ନାନି—

ଅର୍ଜ୍ଜୁନ—ମା ! ମା !—ବାବା ! ବାବା ! (ନମସ୍କାର କଲା)

ଗୋବିନ୍ଦ—ଏ' ଯେ ଅର୍ଜ୍ଜୁନ !

ଜଗଦମ୍ବା—ଗୋବରି ! ଏ' ଯେ ତୋର ଭଣଜା ।

ଗୋବର୍ଦ୍ଧନ—ଭଣଜା

ଅର୍ଜ୍ଜୁନ—(ସମସ୍ତଙ୍କୁ ପ୍ରଣାମାନ୍ତେ ଗୋବର୍ଦ୍ଧନକୁ ପ୍ରଣାମ କରୁ କରୁ) ମାମୁଁ ! କ୍ଷମା କରିବେ—ଚହ୍ନି ପାରି ନ ଥିଲି ।

ଗୋବର୍ଦ୍ଧନ—(ସ୍ୱଗତଃ) ଖାସି ଭକ୍ତ ତ ! (ପ୍ରକାଶ୍ୟେ) ମୁଁ ଏକା ଦୋ ଦୋ ଚହ୍ନା କରିଥିଲି, ଭଣଜା—ତେବେ କ'ଣ କି ନା, କେବେ ଦେଖି ନାହିଁ କି ନା—

ଗୋବିନ୍ଦ—ଆଜି କି ଆନନ୍ଦ, କନିଆ ବୌ !

ଜଗଦମ୍ବା—ଏ' ଯେ ଆନନ୍ଦର ଉପରେ ଆନନ୍ଦ ।

[ ଗୋବର୍ଦ୍ଧନ ବ୍ୟତୀତ ସମସ୍ତେ ପ୍ରସ୍ଥାନ କଲେ ]

ଗୋବର୍ଦ୍ଧନ—ଏହି ମୋର ନାନୀର ସତ୍ତରୁଣୀ ପୁଅ ଅର୍ଜ୍ଜୁନ ?—( ଦୀର୍ଘନିଃଶ୍ୱାସ ତ୍ୟାଗ ପୂର୍ବକ ) ଆଚ୍ଛା ଯାଏ, ଆଗେ ମୋର କାମ ସାରେ—ଅବଧାନ କଥା ମିଛ ହେଲା ? [ ବେଗେ ପ୍ରସ୍ଥାନ ]

—*—

## ତୃତୀୟ ଦୃଶ୍ୟ :—

( ରାଜୋପବନ )

[ କେତେକ ସହଚରୀ ଗୀତ ଗାଇ ଗାଇ
କମଳାକୁ କନ୍ୟାବେଶ କରୁଥିଲେ ]

—ଗୀତ—

କମଳା—ଏ' କି ସାଜେ ସଜାଅ, ସଜନୀ ?
୧ମା—ରୂପ ବିକଶିବ,
୨ୟ—ବାସ ଚହଟିବ,
ସମସ୍ତେ—ଆସିବେ ଲୋ ତ୍ୱରା, ତୋର ଗୁଣମଣି ।
କମଳା—ରୂପ, ଗନ୍ଧେ, ରସି ଖାଲି
ଆସେ ଲୋ ଯେବେ ସେ ଅଳି,
୧ମା—କି ଭାବନା ତହିଁ,
୨ୟା—କର ଗୋ ତୁ ସହି ?
ସମସ୍ତେ--ପଡ଼ିଲେ ତୋର ଫାନ୍ଦେ,
ଚିରଫାନ୍ଦେ, ବନ୍ଧା ସେ ଧନୀ । [ ସଖୀ ପ୍ରବେଶ କରି ]

ସଖୀ—ଅଲୋ ! କଣ କଠେଇ କଠେଇ କାମ କରୁଛ ସବୁ—ହିଅର ତ ମୁଣ୍ଡବନ୍ଧା ଏପର୍ଯ୍ୟନ୍ତ ସରିଲା ନାହିଁ ?
୨ୟା—ମ ! ତୁ ଏତେ ଝାଉ ଝାଉ ହେଉଛୁ କାହିଁକି ? ତୋର ଜୋଇଁ ଆସିଲେ କ'ଣ ଦଣ୍ଡେ ଛିଡ଼ା ହୋଇ ପାରିବ ନାହିଁ ?
୩ୟା—ଦଣ୍ଡେ କାହିଁକି ମ, ପହରେ ତ ଛିଡ଼ା ହୋଇଥିବ ?
୪ର୍ଥୀ—ଫେରଗଲେ ଏବେ ଆମକୁ କି ଲାଗା ଅଛି ?
ସଖୀ—ହିଁ ଲୋ, ତୁମର ସବୁ ଏତେବଡ଼ କଥା—ଜୋଇଁ କଣ ମୋର ଭିକ ମାଗି ଆସୁଛି କି ?
୩ୟା—ଶଏ, ଷାଠିଏ ଗଣି ଦେଇଛୁ ପରା !
୪ର୍ଥୀ—ଆଲୋ, ସେ ତ ଆମର କଣା ଗ୍ରାହକ ।
୧ମା—ତମର ଗରଜ ବୋଲି ଦେଉଛ ନା ?
୨ୟା—ଏହିତ ବର ଆସି ଗଲଣି—ଆସ ଆସ, ବର କନିଆକୁ କୋଡ଼ରେ ଆଣିବା ଆସ ।

[ ସମସ୍ତଙ୍କ ପ୍ରସ୍ଥାନ ଓ ବରକନ୍ୟାଙ୍କୁ ନେଇ
ଗୀତ ଗାଇ ଗାଇ ପୁନଃ ପ୍ରବେଶ
କଲେ ]

—ଗୀତ—

ଆହା କି ମଧୁର ମିଳନ— ମିଳିଛୁ ରତନେ ରତନ,
ସୁର ଶଶୀ କିବା ପାଉଅଛୁ ଶୋଭା
ନୀଳ-ନଭ ଅଙ୍ଗ ଭୂଷଣ ॥

ଧର ଲୋ ମଧୁର ତାନ— ଗାଅ ଲୋ ମଙ୍ଗଳ ଗାନ,
ତାଳେ ତାଳେ ନାଚ୍ ପବନ
ସିଞ୍ଚି ସୁଧାବିନ୍ଦୁ ବହନ
ମାତ ଉଠୁ ତିନ ଭୁବନ ପୁଲକିତ କରି ପଣ ॥

ଶାସ୍ତ୍ରୀ—ଦିଅ ଏବେ ହାତଗଣ୍ଠି ପକାଇ ଦିଅ ।

[ ହସ୍ତବନ୍ଧନ କାର୍ଯ୍ୟ ଆରମ୍ଭ ହେବା ସମୟରେ
କଲୁଷ ଓ ରଙ୍ଗିଲାକୁ ନେପଥ୍ୟେ ଦେଖି
ସମସ୍ତଙ୍କ ସଭୟେ ପ୍ରସ୍ଥାନ । ]

[ ରଙ୍ଗିଲା ପ୍ରବେଶ କରେ ]

ରଙ୍ଗିଲା—ଖେଳ ଲୋ ଖେଳ ସବୁ—ଆହା ! ଗଲିଗଲେ—ହାତ ଗଣ୍ଠି ଟା ପଡ଼ି ପାରିଲା ନାହିଁ ?

[ କଲୁଷ ଦେବ ପ୍ରବେଶ କରେ ]

କଲୁଷ—(ସସ୍ମିତେ) ଆମ ପାଇଁ ତେବେ ବାକି ରହିଲା କ'ଣ ରଙ୍ଗିଲା ?

ରଙ୍ଗିଲା—(ଚମ୍କିତ ହେଲେ)

କଲୁଷ—ଏଣିକି ତୁମେ ଖୁବ ପ୍ରକୃତ ଛଡ଼ା ହେଉଛ, ରଙ୍ଗିଲା ।

ରଙ୍ଗିଲା—ମହାରାଜ !

କଲୁଷ—ଏ' ପୁଣି ଆଜି କି ନୂତନ ଡାକ ରଙ୍ଗିଲା ?

ରଙ୍ଗିଲା—ବନ୍ଧୁ ଯେ, ଆଜି ମହାରାଜ !

କଲୁଷ—କିନ୍ତୁ ରଙ୍ଗିଲି ନିକଟରେ ଯେ ସେହି ବନ୍ଧୁ—ଚରଦିନ ମଧ୍ୟ ସେହି ବନ୍ଧୁ ହିଁ ରହିବ ।

ରଙ୍ଗିଲି—( ଦୀର୍ଘ ନିଃଶ୍ୱାସ ତ୍ୟାଗକଲା )

କଲୁଷ—ମନେ କରୁଛ କି ରଙ୍ଗିଲି ! ଆଜି ରାଜକୀୟ ବିଷୟରେ ସ୍ୱାଧୀନ ହେଲି ବୋଲି, ତୁମ୍ଭ ନିକଟରେ ମଧ୍ୟ ସ୍ୱାଧୀନ ହେଲି ?—ଅସମ୍ଭବ । ପ୍ରଥମ ସ୍ୱାଧୀନତାରେ ଯେଉଁ ପରିମାଣରେ ସୁଖ, ଦ୍ୱିତୀୟ ସ୍ୱାଧୀନତାରେ ଯେ ସେହି ପରିମାଣରେ ଦୁଃଖ !—ପ୍ରଥମ ସ୍ୱାଧୀନତା ରାଜାର ଯେତେଦୂର ଆକାଙ୍କ୍ଷିତ—ଦ୍ୱିତୀୟ ସ୍ୱାଧୀନତା ଯେ ପ୍ରେମିକର ତେତେଦୂର ଘୃଣିତ !—ମୁଁ ଆଜି ଉତ୍କଳର ସ୍ୱାଧୀନ ରାଜା ସତ୍ୟ; କିନ୍ତୁ ରଙ୍ଗିଲିର ଅଧୀନସ୍ଥ ଦାସାନୁଦାସ ମାତ୍ର !

ରଙ୍ଗିଲି—ଏ ଅଧୀନା ଯେ ସାମାନ୍ୟ ଜଣେ ପ୍ରଜା—ଦାସୀର ମଧ୍ୟ ଅଯୋଗ୍ୟା, ତାକୁ ଏତେ ଉଚ୍ଚାସନ କି ସାଜେ, ପ୍ରଭୋ ?

କଲୁଷ—ରଙ୍ଗିଲି ! ଏହି କି ତୁମ୍ଭର ପ୍ରକୃତ ପ୍ରଣୟ ? ଆମ୍ଭମାନଙ୍କ ମଧ୍ୟରେ ରାଜା-ପ୍ରଜା ଭାବ ! ଉଚ୍ଚ-ନୀଚ ଭାବ ! ଏ ପାର୍ଥିବ ରାଜ୍ୟ ସହିତ ଆମ୍ଭମାନଙ୍କର କି ସମ୍ବନ୍ଧ ?—ଏ ପାର୍ଥିବ ପଦମର୍ଯ୍ୟାଦାରେ ଆମ୍ଭମାନଙ୍କର କି କାର୍ଯ୍ୟ ? ଆମ୍ଭେମାନେ କି ଯେ ପବିତ୍ର ପ୍ରେମ-ରାଜ୍ୟବାସୀ—ସେଠାରେ କି ଭେଦାଭେଦ ଅଛି ? ସମସ୍ତେ ଯେ ସମାନ—ସମସ୍ତେ ଯେ ଏକାକାର !

ରଙ୍ଗିଲି—ପ୍ରକୃତରେ କି ଆମ୍ଭେମାନେ ସେ ରାଜ୍ୟବାସୀ ହୋଇ ପାରିବୁ, ବନ୍ଧୋ ?

କଲୁଷ—ଆଜନ୍ମରୁ ତ ସେ ରାଜ୍ୟବାସୀ ହୋଇଛୁଁ ।

ରଙ୍ଗିଲି—ଚିରଦିନ ସକାଶେ ସେ ଦାବୀ ଅକ୍ଷୁଣ୍ଣ ରହିବ ?

କଲୁଷ—ଏପରି ଆଶଙ୍କା କାହିଁକି, ରଙ୍ଗିଲି ? ଆଜି ମୁଁ ରାଜ୍ୟଭାର ସ୍ୱହସ୍ତରେ ଗ୍ରହଣ କରିଛି ବୋଲି ଚାରିଆଡ଼େ ମହୋତ୍ସବ—ଚାରିଆଡ଼େ ଜୟ ଜୟ ଧ୍ୱନି, ମାତ୍ର ହୃଦୟ କି ସେ ଧ୍ୱନିରେ ଥରେ ସୁଦ୍ଧା ଉତ୍‌ଫୁଲ୍ଲିତ ହେଉଛି ?—ପ୍ରାଣ କି ସେ ଆନନ୍ଦରେ ଥରେ ହେଲେ ନାଚି ଉଠୁଛି ?

ରଙ୍ଗିଲି—କାହିଁକି ଏ ଅଶାନ୍ତ, ବନ୍ଧୋ ?

କଲୁଷ—କାହିଁକି ? ପିପାସିତ ପ୍ରାଣର ଯାହା ଆକାଙ୍କ୍ଷା, ସେ ଯେ ଅଦ୍ୟାପି ନିକଟେ ଥାଉଁ ଥାଉଁ ଦୂରେ—ହୃଦୟର ଯାହା ମଣ୍ଡନ, ସେ ଯେ ଅଦ୍ୟାପି ସମ୍ମୁଖରେ ଥାଉଁ ଥାଉଁ ପରୋକ୍ଷ !

ରଙ୍ଗିଲି—ଏତେ ଅନୁଗ୍ରହ ଏ ଅଧୀନାପ୍ରତି—ଈଶ୍ୱର କି ସତେ ଏ ଅନୁଗ୍ରହ ରକ୍ଷା କରିବେ ?

କଲୁସ—କିଛି ଭୟ ନାହିଁ, ରଙ୍ଗିଲ ! କେହି ଆଉ ବାଧା ଦେଇ ପାରିବେ ନାହିଁ—ମୁଁ ବର୍ତ୍ତମାନ ସ୍ୱାଧୀନ ।

[ ରାଣୀର ପ୍ରବେଶ ]

ରାଣୀ—(ସ୍ୱଗତଃ) ତଥାପି, ପରାଧୀନ ତୁ, କଲୁ ! (ପ୍ରକାଶ୍ୟେ) କଲୁ, ଯା ତୋର ସଙ୍ଗାତ ଆସିଛି ।

କଲୁସ—ସଙ୍ଗାତ ଆସିଛି ?

ରାଣୀ—ଆ, ରଙ୍ଗିଲ ! ତୋ ସଙ୍ଗେ ଅନେକ କଥା ଅଛି । [ ଉଭୟଙ୍କ ପ୍ରସ୍ଥାନ ]

—୧୦୪—

**ଚତୁର୍ଥ ଦୃଶ୍ୟ :—**

(ଗୋବର୍ଦ୍ଧନର ଗୃହାଭ୍ୟନ୍ତର)

[ ଗୋବର୍ଦ୍ଧନ କୋଷ୍ଠୀହସ୍ତେ ପ୍ରବେଶ କଲେ ]

ଗୋବର୍ଦ୍ଧନ—ମାନ ! ମାନି ! ଅଉ ମୋର ଭୟ ନାହିଁ—ଭେଣେଇ ଯେତେ ତଡ଼ନ୍ତୁ ପଛକେ, ଲକ୍ଷ୍ମୀ ଆସି ଝୁଣ୍ଟସ୍ୟୁ ଭେଣେଇଙ୍କ ଗୋଡ଼ତଳେ ଠିଆ, ଜାଣ—ଅବଧାନ ନାଜ ଖଣ୍ଡ ବିଷୟରେ ଯା' ଟିକଏ ଦୋ ଦୋ ମନା ହେଉଥିଲା, ଭେଣେଇଙ୍କ କୋଷ୍ଠୀ ଦେଖି ଏକାବେଳେକେ ସ୍ଥିର ଜବାବ ଦେଇଛୁ ନିଶ୍ଚୟ ଭେଣେଇ ରାଜା ହେବ—ବାଃ ବାଃ ! ମାମା ତେବେ ନିଶ୍ଚୟ ରାଣୀ ହେବ—ଗୋବର୍ଦ୍ଧନ ନିଶ୍ଚୟ ରାଜ-ଶ୍ୟାମଳ ହେବ ।—ବୁଝ, କୋଷ୍ଠୀଟା ଆଗେ ମାମା ଜିମ୍ମା କର ଦଏ ! ଭେଣେଇ ଯେବେ ଦେଖନ୍ତି, କିମ୍ବା କେହି କହିଦଏ—ମାମା କାହିଁ ?            (ଅନ୍ୟ ଦିଗେ ପ୍ରସ୍ଥାନ)

[ କିଛିକ୍ଷଣ ପରେ ବିପରୀତ ଦିଗରୁ<br>ଜଗଦମ୍ବାର ପ୍ରବେଶ ] •

ଜଗଦମ୍ବା—ଏଡ଼େ ପଣ୍ଡିତ ହୋଇ, ଘରକରଣା ବୁଦ୍ଧି ଆଦୌ ତାଙ୍କର ନାହିଁ । ସେ କହନ୍ତି, ଗୋବରା ନିହାତ ଅପଦାର୍ଥ, କିନ୍ତୁ ସେହି ଅପଦାର୍ଥ ଭିତରେ ଯେଉଁଟିକ ପଦାର୍ଥ ଅଛି ତା'ର ଏତିକ ଟିକେ ଭଲ ନଜ ପାଖରେ ଥାନ୍ତା ? ଗୋବରା ଠିକ୍ କହିଛି, ଭେଣେଇ ହାତର ଲକ୍ଷ୍ମୀକୁ ଗୋଡ଼ରେ ପେଲି ଦେଇଛନ୍ତି ।—ଯାଚି ଗୁଞ୍ଜି ନଜର କ୍ଷମତା ପରକୁ ବଢ଼େଇ ଦେବାର କ ଦରକାର ଥିଲ ? ହେଉ ସେ ଅଧିକାରୀ—ହେଉ ଆମେ ବିଶ୍ୱାସୀ ପ୍ରଜା, ଅମେତ କିଛି କାଟି ଖାଇ ଯାଉନଥିଲୁ କ ସେ ତ ଦଅ, ଦଅ ବୋଲି ଜୋର ଜୁଲମ କରୁ ନ ଥିଲେ, ସେମିତ ଉପରେ ପଡ଼ି ଯାଚି ଗୁଞ୍ଜି ହେବାର ଦରକାର କ'ଣ ଭଲ ?—ନଜ ଇଚ୍ଛାରେ କାମ କରୁଥିଲ, ସେ କେଡ଼େ ସୁଖ ! ବର୍ତ୍ତମାନ ସିନା ପର ଇଚ୍ଛାରେ ବସିବ, ପର ଇଚ୍ଛାରେ ଠିଆ ହେବ, ପର ଇଚ୍ଛାରେ ଚାଲିବ ?

[ ଗୋବର୍ଦ୍ଧନ ପ୍ରବେଶ କଲ ]

ଗୋବର୍ଦ୍ଧନ—କିମିଆ ବୋଉ ! ଆଜ ଠିକ୍ କର ଆସିଲି ।

ଜଗଦମ୍ବା—କ'ଣ ଠିକ୍ କର ଆସିଲ ?

ଗୋବର୍ଦ୍ଧନ—ବାହାଘର ।—

ଜଗଦମ୍ବା—କା'ର ?।

ଗୋବିନ୍ଦ—ଆମର ଅଜୁର ।
ଜଗଦମ୍ବା—ଗୋବିନ୍ଦର ?
ଗୋବିନ୍ଦ—ବାହାଘର ତ ଖେଳଘର ନୁହେଁ, କନିଆ ଦେବୀ ! ସ୍ତ୍ରୀ ଯେ ଲତା ସଙ୍ଗେ ସମାନ
—ଗଛ ମଜବୁତ୍ ନ ହେଲେ, ତା ଦେହରେ କି ଲତାକୁ ବଢ଼େଇ ଦେବା ଉଚିତ ?
ଜଗଦମ୍ବା—(ସ୍ୱଗତଃ) ମୋର ଗୋବିନ୍ଦ କି ତେବେ ଅମଜବୁତ୍ ? ( ଦୀର୍ଘନିଃଶ୍ୱାସ ତ୍ୟାଗ
କରି ପ୍ରକାଶ୍ୟେ ) ଆଚ୍ଛା, କନିଆ କେଉଁଠି ଠିକ୍ କଲ ?
ଗୋବିନ୍ଦ—ଆମର କୋଟାଲ-ଝିଅ ।
ଜଗଦମ୍ବା—ଚଇଁଲି ? ବେଶ୍ ଝିଅଟିଏ ଏକା—ଆଚ୍ଛା, ଆମର ରାଜାଙ୍କର ସହିତ ପରା ତା'ର
କୁଆଡ଼େ ବାହାହେବାର କଥା ହେଉଥିଲା ?
ଗୋବିନ୍ଦ—ରାଜାଙ୍କର ଭାରି ଇଚ୍ଛା ଥିଲା—ଏ ବିଷୟରେ ମଧ୍ୟ ସେ ଭାରି ଜିଦ୍ କରିଥିଲେ,
ମାତ୍ର ରାଣୀ ରାଜି ହେଲେ ନାହିଁ—ଆମ୍ଭେମାନେ ବି ମତ ଦେଲୁ ନାହିଁ ।
ଜଗଦମ୍ବା—କାହିଁକି ଦେଲ ନାହିଁ ? ସେ କି ରାଜାଙ୍କ ଲାଗି ନୁହେଁ ? କେଉଁ ଗୁଣରେ ସେ
ଊଣା ?
ଗୋବିନ୍ଦ—କୋଟିକରେ ଗୋଟିଏ କହିଲେ ଚଳେ, ମାତ୍ର ରାଜାଙ୍କ ଲାଗି ବଂଶ ମର୍ଯ୍ୟାଦା ତ
ଦେଖିବାକୁ ହେବ—ଜଣେ ସାମାନ୍ୟ ରାଜକର୍ମଚାରୀ ସଙ୍ଗେ କି ଗଙ୍ଗବଂଶୀୟ ରାଜାଙ୍କର
ବୈବାହିକ ସମ୍ବନ୍ଧ କରିବା ଉଚିତ ?
ଜଗଦମ୍ବା—ସେ ଯାହା ହେଉ, ରାଜା ଆମର କିନ୍ତୁ ତାଙ୍କୁ ଦଣ୍ଡେ ନ ଦେଖିଲେ ରହି
ପାରବେ ନାହିଁ ।
ଗୋବିନ୍ଦ—ବାଧ୍ୟ ହୋଇ ରହିବାକୁ ହେବ । ନିଜର ମର୍ଯ୍ୟାଦା ଖାତିରରେ—ବଂଶର
ମର୍ଯ୍ୟାଦା ଖାତିରରେ ଆତ୍ମସୁଖ ବଳି ଦେବାକୁ ହେବ । ଛାଡ଼, ବର୍ତ୍ତମାନ ବିବାହର
ଆୟୋଜନ ଶୀଘ୍ର କରିବାକୁ ହେବ ।
ଜଗଦମ୍ବା—ଦିନ କେବକୁ ହୋଇଛି ?
ଗୋବିନ୍ଦ—ସେ ବିଷୟ ଠିକ୍ କରିବା ନିମନ୍ତେ ଏହିକ୍ଷଣି ସାର୍ବଭୌମଙ୍କୁ ଡକାଇ ପଠାଇଛି,
ବୋଧହୁଏ ସେ ଆସିବେଣି—ମୁଁ ଯାଏଁ ।  ( ପ୍ରସ୍ଥାନ )
ଜଗଦମ୍ବା—ଗୋବିନ୍ଦ ମୋର ହେଲା ଅମଜବୁତ୍, ଆଉ ଅଜୁ ହେଲା ମଜବୁତ୍ ! ହାୟ, ଅଜୁ
ବାହା ହେବ—ବହୂ ଆଣିବ—ମନ ଖୁସିରେ ବୁଲିବ ବୁଲିବ— ଗୋବିନ୍ଦ ସିନା ମୋର
ମୁହଁ ଶୁଖେଇ ବୁଲିବ—ଆଖିର ଲୁହ ଆଖିରେ ମାରିବ !

[ ଅର୍ଜୁନର ପ୍ରବେଶ ]

ଅର୍ଜୁନ—ମା !
ଜଗଦମ୍ବା—( ନୀରବ )

ଅର୍ଜ୍ଜୁନ—ଏ କ'ଣ ମା, ତୋତେ ଯେ ଆଜ ଭାରି ବିମର୍ଷ ଦେଖୁଛି !
ଜଗଦମ୍ବା—ମୋ'ର ଦେହଟା ଆଜ କାହିଁକି ଭଲ ଲାଗୁ ନାହିଁ ।
ଅର୍ଜ୍ଜୁନ—ଏତେବେଳଯାଏ ଯେ ମୋତେ କହିନାହଁ ?
ଜଗଦମ୍ବା—ନା, ଏମନ୍ତ ତ ବେଶି କଛି ହୋଇ ନାହିଁ !—
ଅର୍ଜ୍ଜୁନ—ନ ହେଲେ କଣ ହେଲ—ମୁହଁ ତ ଶୁଖିଛି ? ମା ଯେବେ ମୋର ଟିକଏ ହେଲେ କଷ୍ଟ ପାଇବ, ତେବେ ମୋର ଏତେ କବିରାଜ ପଢ଼ି କ ଫଳ ?
ଜଗଦମ୍ବା—ଟିକଏ ମୁଣ୍ଡ ବିନ୍ଧୁଛି ଏଥିପାଇଁ ଏତେ ବ୍ୟସ୍ତ କାହିଁକି ?
ଅର୍ଜ୍ଜୁନ—ମୁଣ୍ଡ ବିନ୍ଧୁଛି ? ରହ, ମୁଁ ଏହିକ୍ଷଣି ଅରଖ ନେଇ ଆସୁଛି । ଓଃ—ମା'ର କ କଷ୍ଟ ହେଉଛି !                    ( ପ୍ରସ୍ଥାନୋଦ୍ୟତ )
ଜଗଦମ୍ବା—ଔଷଧ ଖୁଆଇ ଖୁଆଇ ମୋତେ ସାରିଲୁଣି, ଅଜୁ ! ନା—ମୁଁ ଆଉ ଔଷଧ ଖାଇବି ନାହିଁ ।
ଅର୍ଜ୍ଜୁନ—ଏ' ଲଗାଇବା ଔଷଧ, ମା—ଖାଇବାର ନୁହେଁ । ଟିକଏ ରହ, ମୁଁ ଏହିକ୍ଷଣି ନେଇ ଆସୁଛି—ଓଃ ମା'ର କ କଷ୍ଟ ହେଉଛି !          [ ବେଗେ ପ୍ରସ୍ଥାନ ]
ଜଗଦମ୍ବା—ଏହି ଦେଖ—ବାହା କଥା ଶୁଣି କେଡ଼େ ଖୁସି !—ବାହା ହେଲେ ନ ଜାଣେ କଣ ନ ହେବ ?

[ ଗୋବର୍ଦ୍ଧନ ପ୍ରବେଶ କର ]

ଗୋବର୍ଦ୍ଧନ—ନାନି !
ଜଗଦମ୍ବା—( କ୍ରନ୍ଦନ ସ୍ୱରରେ ) ଗୋବରିରେ !          ( ଆଲିଙ୍ଗନ କଲ )
ଗୋବର୍ଦ୍ଧନ—କାନ୍ଦୁଛୁ କାହିଁକି, ନାନ ? ନିଶ୍ଚୟ ହେବ ।
ଜଗଦମ୍ବା—ନିଶ୍ଚୟ ହେବଟି ?—ଚଞ୍ଚଳ ହେବ ନା ?
ଗୋବର୍ଦ୍ଧନ—ଭେଣେଇ ଯେପରି ଘୁଲିଛନ୍ତି, ସେଥିରେ କ ଚଞ୍ଚଳ ହେବାର ଉପାୟ ଦେଖୁଛୁ, ନାନି ?
ଜଗଦମ୍ବା—ନିଜେ ଚେଷ୍ଟା କଲେ ଚଞ୍ଚଳ କଣ ହେବ ନାହିଁ ?
ଗୋବର୍ଦ୍ଧନ—ଅବଧାନ ବି ଠିକ୍ ସେହିପରି କହୁଥିଲ—'ଯତ୍ନ କଲେ ରତ୍ନ ମିଳେ'—'ଉଦ୍ୟମ କଲେ ନିଶ୍ଚୟ ଜୟ ହେବ' ।
ଜଗଦମ୍ବା—ତୁ ତେବେ ଆଉ ହେଳା କର ନା, ଗୋବରି !—ଅଜୁ ବୋହୂ ଆଣିବା ପୂର୍ବରୁ ତୋ'ର ଯେପରି ବୋହୂ ଆସେ ।
ଗୋବର୍ଦ୍ଧନ—ବୋହୂ ! କ ବୋହୂ, ନାନି ?
ଜଗଦମ୍ବା—ଗୋବରିରେ ! ତୋ'ର ବୋହୂ କେବେ ଆସିବରେ ?
ଗୋବର୍ଦ୍ଧନ—ନାନି ! ତୋର କଣ ଆଜ ମୁଣ୍ଡ ଖରାପ ହୋଇଛି ।

[ ଅର୍ଜ୍ଜୁନର ପୁନଃ ପ୍ରବେଶ ]

ଅର୍ଜ୍ଜୁନ—ହଁ ମାମୁଁ ! ମା'ର ମୁଣ୍ଡ ଆଜ ଖରାପ ହୋଇଛି । ତୁମେ ମା' ସଙ୍ଗେ ଏତେ ବକାବକ କର ନାହିଁ—ମୁଁ ଔଷଧ ଲଗାଇ ଦଏ ।

ଗୋବର୍ଦ୍ଧନ—ଦେ ଅଜ—ଭଲକର ଔଷଧ ଲଗାଇ ଦେ । (ସ୍ୱଗତଃ) କଣ କରୁଛି, କୋଷ୍ଠୀଟା ଲୁଚାଇ ରଖୁଛି କେଉଁଠି ?

ଅର୍ଜ୍ଜୁନ—ଗଲ ମାମୁଁ, ଚଞ୍ଚଳ ଗୋଟାଏ ବଞ୍ଚଣା ନେଇ ଆସିବ—ଉଃ, ମା'ର କ କଷ୍ଟ ହେଉଛି !

[ ଗୋବର୍ଦ୍ଧନର ପ୍ରସ୍ଥାନ ଓ ଅର୍ଜ୍ଜୁନ ଜଗଦମ୍ବା କପାଳରେ ଔଷଧ ଲଗାଇ ଦେଉଥିବା ]

ଜଗଦମ୍ବା—ଗୋବର ! ଯା ତୁ, ଜଲ୍‌ଦ ଯା—ବୋହୂ ନେଇ ଆ'—ତୋ'ର ଶୁଖିଲା ମୁହଁ ମୁଁ ଦେଖି ପାରିବି ନାହିଁରେ—

ଅର୍ଜ୍ଜୁନ—(ସ୍ୱଗତଃ) ଉଃ—ମା'ର ମୁଣ୍ଡ ଗ୍ରର ବଢ଼ିଉଛି ! ଆଉ କ ଔଷଧ ଦେଲେ ଭଲ ହେବ ?

[ ଔଷଧ ଲଗାଉଥିବା—ଗୋବର୍ଦ୍ଧନ ପ୍ରବେଶକରି ବଞ୍ଚଣା କରିବା ଏବଂ ସଙ୍ଗେ ସଙ୍ଗେ ଗୋବନ୍ଦ ବଦ୍ୟାଧରଙ୍କର ପ୍ରବେଶ ]

ଜଗଦମ୍ବା—ସେ ଶୁଖିଲା ମୁହଁ ମୋତେ ଆଉ ଦେଖାନା ରେ—

[ ଗୋବନ୍ଦକୁ ଦେଖି ଅର୍ଜ୍ଜୁନକୁ କୁଣ୍ଢାଇବା ]

ଗୋବନ୍ଦ—ଶୁଖିଲା ମୁହଁ ଆଉ ଦେଖିବାକୁ ହେବ ନାହିଁ, କନଆ ବୌ ! ମୁଁ ଦନ ଠିକ୍ କରି ଆସିଲଣି—ଶୀଘ୍ର ବୋହୂ ଆସିବ ।

ଜଗଦମ୍ବା—(ବମର୍ଷ ଭାବେ ରହିବା)

ଗୋବନ୍ଦ—ମୋ କଥା ସତ ମାନ, କନଆ ବୌ ! ମନ ପ୍ରଫୁଲ୍ଲ କର—ବୋହୂ ଚଞ୍ଚଳ ଆସିବ ।—ଆହା ! ଅଜୁ ପ୍ରତି କନଆବୌର କ ସ୍ନେହ—ଗର୍ଭଧାରଣୀ ଜନମାର ବୋଧହୁଏ ସନ୍ତାନ ପ୍ରତି ଏତେ ମମତା ହେବ ନାହିଁ !

[ ଜଗଦମ୍ବା ସକୋପ ଦୃଷ୍ଟିରେ ଗୋବନ୍ଦକୁ ଗ୍ରହିଁ ରହିବା ]

ପ୍ରଥମ ଦୃଶ୍ୟ :—

(ବିଳାସ-କକ୍ଷ)

କଲ୍ମଷ—ଦିଅ, ଗୋବର୍ଦ୍ଧନ—ଆଙ୍ଗୁର ଦିଅ !
ଗୋବର୍ଦ୍ଧନ—ଏହି ଦେଉଛି, ମହାରାଜ !

[ ସମ୍ମୁଖରେ ସୁରାପାତ୍ର ଧାରଣ କଲା ]

କଲ୍ମଷ—ଆଃ—ଏତେ ଅଳ୍ପ କାହିଁକି ?
ଗୋବର୍ଦ୍ଧନ—ଅପଣ ଯେ ଅନେକ ପିଇଲେଣି ।
କଲ୍ମଷ—ପିଇଲେ କଣ ଆଉ ପିଅନ୍ତି ନାହିଁ ?
ଗୋବର୍ଦ୍ଧନ—ସହି ପାରିଲେ ତ ହେବ ?
କଲ୍ମଷ—ହାଃ-ହାଃ-ହାଃ—ଏହି ସାମାନ୍ୟ ରସର ପ୍ରତିକ୍ରିୟା ସହି ପାରିବି ନାହିଁ ?— ମାତୃ ଆଜ୍ଞା ପାଳନ ନିମନ୍ତେ—ନିଜର ବଂଶମର୍ଯ୍ୟାଦା ରକ୍ଷା ନିମନ୍ତେ—ରଙ୍ଗିଲାର, ମୋ'ର ଆବାଲ୍ୟସଖୀ ରଙ୍ଗିଲାର -ମୋର ପ୍ରାଣପ୍ରିୟତମା ରଙ୍ଗିଲାର ଚିର ବିଚ୍ଛେଦ ଯନ୍ତ୍ରଣା ସହି ପାରୁଛି—ରାଜକାର୍ଯ୍ୟ କାର୍ଯ୍ୟ ସମ୍ପାଦନ ନିମନ୍ତେ—ପ୍ରଜାମାନଙ୍କ ମନୋ-ରଞ୍ଜନ ନିମନ୍ତେ—ନିତ୍ୟ ନିତ୍ୟ କେତେ ସୁଖ ବଳି ଦେଉଛି, କେତେ ତାପ କ୍ଲେଶ ସହି ପାରୁଛି—ଏହି ସାମାନ୍ୟ ରସର ମୁହୂର୍ତ୍ତିକ-ପ୍ରତିକ୍ରିୟା ସହି ପାରିବି ନାହିଁ ?
ଗୋବର୍ଦ୍ଧନ—ମହାରାଜ !
କଲ୍ମଷ—ନା, ତୁମେ ଏଣିକି ଭାରି କୃପଣ ହେଲଣି ।
ଗୋବର୍ଦ୍ଧନ—ବେଶ, ତେବେ ଦେଖନ୍ତୁ, ମୁଁ ଗିଲାସ ଗିଲାସ ଭର୍ତ୍ତି କରି ଦେଉଛି ।
କଲ୍ମଷ—ଗିଲାସ, ଗିଲାସ ଭର୍ତ୍ତି କରୁଛ କ'ଣ, ଗୋବର୍ଦ୍ଧନ ? ପିମ୍ପା ପିମ୍ପା ଭର୍ତ୍ତି କର— ପୋଖରୀ ପୋଖରୀ ଭର୍ତ୍ତି କର—ନଦୀ ନଦୀ ଭର୍ତ୍ତି କର—ସାଗର ସାଗର ଭର୍ତ୍ତି କର—ମୁଁ ପିଇବି—ମୁଁ ଗାଧୋଇବି—ଡୁବିବି—ସମସ୍ତ ଜ୍ୱାଳା ଲିଭାଇବି !
ଗୋବର୍ଦ୍ଧନ—ମହାରାଜ ! କେତେ ଆଉ ତ କେତେ କେତେ ଅପସରା ଭଳି ରାଜକନ୍ୟାଙ୍କ ବିବାହ ପ୍ରସ୍ତାବ ଆସୁଛି, ସେହି ସାମାନ୍ୟ ପ୍ରଜା-କନ୍ୟା ପାଇଁ ଏତେ ଅଥୟ କାହିଁକି ?
କଲ୍ମଷ—ଚୁପ୍ କର ! ମୋତେ ମୋର ମାନସୀ ପ୍ରତିମାକୁ ଧ୍ୟାନ କରିବାକୁ ଦିଅ !
ଗୋବର୍ଦ୍ଧନ—ଏତେ ଭଲ ପାଆନ୍ତି ? ହାୟ ! ଉପାୟ କ'ଣ ?
କଲ୍ମଷ—ଉପାୟ ? କି ଉପାୟ କହ ଗୋବର୍ଦ୍ଧନ, କି ଉପାୟ କଲେ ରଙ୍ଗିଲାକୁ ମୋର ପାଇବି—କି ତ୍ୟାଗ ସ୍ୱୀକାର କଲେ ମୋର ପ୍ରାଣପ୍ରିୟତମାକୁ ମୁଁ ପାଇବି ? ଉଃ ; ସେ ଯେ ପରଣୀତା—ସେ ଯେ ପରକୀୟା !

ଗୋବର୍ଦ୍ଧନ—ଆପଣ ଏତେ ଅସ୍ଥିର ହେଉନ୍ତୁ ନାହିଁ ।

କଳୁଆ—ମୁଁ ଯେ ଆଉ ସ୍ଥିର ହୋଇପାରୁ ନାହିଁ ।—ମା ଯେଉଁଦିନ ମନା କରିବାରୁ—ସ୍ୱଜନମାନେ ଯେଉଁଦିନ ମୋର ମତର ବିରୁଦ୍ଧରେ ଦଣ୍ଡାୟମାନ ହେବାରୁ, ରଙ୍ଗିଲର ସହିତ ମୋର ବିବାହ ପ୍ରସ୍ତାବ ରେହିନପାଇଁ ଭାଙ୍ଗିଗଲା, ମୋର ମସ୍ତକରେ ବଜ୍ରପାତଠାରୁ ଭୀଷଣତର ଯନ୍ତ୍ରଣା ହେଲା ସତ୍ୟ—ହୃଦୟରେ ଶେଲାଘାତଠାରୁ ଦାରୁଣତର ବେଦନା ଅନୁଭବ କଲି ସତ୍ୟ, ମାତ୍ର ଏତେଦୂର ଅସ୍ଥିର ହୋଇ ନ ଥିଲି—ଏତେଦୂର ଜର୍ଜ୍ଜରିତ ହୋଇ ନ ଥିଲି । ଦିନ ଦିନ କରି କାଳସ୍ରୋତ ଯେତେ ଯେତେ ଅତୀତ ଗର୍ଭକୁ ବୋହି ଯାଉଛି—ଆମ୍ଭମାନଙ୍କ ମଧ୍ୟରେ ବ୍ୟବଧାନର ଆୟତନ କ୍ରମେ କ୍ରମେ ଯେତେ ବଢ଼ି ଯାଉଛି—ମୋ'ର ଅସ୍ଥିରତା ସେହି ପରିମାଣରେ ବଢ଼ୁଛି ।—ମୁଁ ଅନୁଭବ କରୁଛି, ଦାରିଦ୍ର୍ୟ, କର୍ତ୍ତବ୍ୟପୂର୍ଣ୍ଣ ସଂସାର ଯେପରି ଏକ ଆଡ଼େ ଆଉ ମୋ'ର ପ୍ରାଣପ୍ରିୟତମା ରଙ୍ଗିଲ ଯେପରି ଅନ୍ୟଆଡ଼େ ।

ଗୋବର୍ଦ୍ଧନ—ମହାରାଜ ! ସେ ନିଷ୍ଠୁର ଲୋକେ ଆପଣଙ୍କୁ ଏହି ପରିମାଣରେ ଭଲ ପା'ନ୍ତି ?

କଳୁଆ—ଏହି ପରିମାଣରେ ? ଏହା ଯେ ଅତି ସାମାନ୍ୟ—ବିନ୍ଦୁ ମାତ୍ର !

ଗୋବର୍ଦ୍ଧନ—ତେବେ, ଆପଣ ବାଧ୍ୟ ନ କରି ବଡ଼ ଖରାପ କାମ କରଛନ୍ତି ।

କଳୁଆ—ଖରାପ କାମ କରି ନାହିଁ, ଗୋବର୍ଦ୍ଧନ ! ଖରାପ କାମ କରୁଛି—ଏହାଠାରୁ ଅଧିକତର ଖରାପ କାମ ମଧ୍ୟ କରିବାକୁ ଯାଉଛି । କେଉଁ ଧୀମାନ୍, ବୁଦ୍ଧି ବିବେକ ଥାଉଁ ଥାଉଁ, ମଧୁପାତ୍ର ଛାଡ଼ି ସୁରାପାତ୍ରରେ ନିଜର ତୃଷା ନିବାରଣ କରିବାକୁ ଧାଏଁ ? —କେଉଁ ମନୁଷ୍ୟ ମନୁଷ୍ୟତ୍ୱ ଥାଉଁ ଥାଉଁ, ଅର୍ଜ୍ଜୁନପରି ବନ୍ଧୁ ଛାଡ଼ି ଗୋବର୍ଦ୍ଧନର ବନ୍ଧୁତ୍ୱ ଲଭ କରିବାକୁ ଇଚ୍ଛା କରେ ? ଆଜି ମାତାର ଅବାଧ୍ୟ ହୋଇଥିଲେ—ବିବେକ ପ୍ରତି କଟାକ୍ଷ କରିଥିଲେ ବୋଧହୁଏ ଏତେଦୂର ଖରାପ କାମ କରି ନ ଥାନ୍ତି, ବୋଧହୁଏ ଆଜି ପ୍ରାଣ ଶାନ୍ତିମୟ ହୋଇଥାନ୍ତା !

ଗୋବର୍ଦ୍ଧନ—(ବିଷଣ୍ଣ ସ୍ୱରେ) ମହାରାଜ !

କଳୁଆ—କିଛି ଚିନ୍ତାକର ନାହିଁ, ଗୋବର୍ଦ୍ଧନ ! ତୁମ୍ଭେମାନେ ମୋର ସର୍ବସ୍ୱ—ଏ' ନୈରାଶ୍ୟରେ ତୁମ୍ଭେ ହିଁ ଏକମାତ୍ର ଧ୍ରୁବତାରା—ଏ ପିପାସାରେ ସୁରା ହିଁ ଏକମାତ୍ର ଶାନ୍ତି ।

[ ଏକ ହାତରେ ଗୋବର୍ଦ୍ଧନକୁ ଓ ଅନ୍ୟ ହାତରେ ସୁରାପାତ୍ର ଧାରଣ କଲେ ]

[ ଗୋବିନ୍ଦର ପ୍ରବେଶ ]

ଗୋବିନ୍ଦ—ମହାରାଜ !

କଲ୍ପତରୁ—ହାଃ-ହାଃ-ହାଃ—କପଟ ମହାରାଜ ମୂର୍ତ୍ତି !—ମୋର ରାଜସଭା, ଏହି ପ୍ରମୋଦ ଭବନରେ—ମୋର ମନ୍ତ୍ରୀ, ଏହି ଗୋବର୍ଦ୍ଧନ—ମୋର ରାଜଚିହ୍ନ, ଏହି ସୁରାପାତ୍ର !

ଗୋବିନ୍ଦ—(କ୍ରୋଧରେ) ଗୋବର୍ଦ୍ଧନ ! ଏହି ତୋର ରାଜ-ଗୃହକକ୍ଷ ? ଦୂରହ' ଏ ସ୍ଥାନରୁ ନରାଧମ !

·[ ଗୋବର୍ଦ୍ଧନ ଭୟରେ ପ୍ରସ୍ଥାନୋଦ୍ୟତ ]

କଲ୍ପତରୁ—ଏଠାରେ ମଧ ତୁମ୍ଭର ଆଧିପତ୍ୟ ବିସ୍ତାର କରିବାକୁ ଚାହିଁ, ବୃଦ୍ଧ ? ରାଜାର ରାଜ୍ୟ ଅଧିକାର କଲ—ପ୍ରଭୁର ପ୍ରଭୁତ୍ୱ ଅପହରଣ କଲ—ପ୍ରେମିକର ପ୍ରେମିକାକୁ ବିଚ୍ଛିନ୍ନ କଲ; ତଥାପି ତୁମ୍ଭର ଲାଳସା ପୂରିଲା ନାହିଁ ଯେ, ଗୋଟିଏ ମାତାଲର ସାମାନ୍ୟ ସୁରାପାତ୍ରରେ ଲୋଭ ବଳାଇଲ ?—ତାହାର ମୁହୂର୍ତ୍ତିକ ନିଶା-ସୁଖରେ ବ୍ୟାଘାତ ଦେବାକୁ ଧାଇଁ ଆସିଲ ?

ଗୋବିନ୍ଦ—ମହାରାଜ ! ଆପଣଙ୍କ ମତି ବୋଧହୁଏ ବର୍ତ୍ତମାନ ସ୍ଥିର ନାହିଁ ?

କଲ୍ପତରୁ— ଖୁବ୍ ସ୍ଥିର ଅଛି, ବୃଦ୍ଧ ! ମୁଁ ଠିକ୍ ଚିହ୍ନି ପାରିଛି, ତୁମ୍ଭେ ସେହି ମନ୍ତ୍ରୀ, ଯେ କି ରାଜାକୁ କେବଳ ସାକ୍ଷୀଗୋପାଳ କରି ସମଗ୍ର ରାଜ୍ୟ ଉପରେ ନିଜର କ୍ଷମତା ବିସ୍ତାର କରିଛ—ତୁମ୍ଭେ ସେହି ପରାମର୍ଶଦାତା, ଯେ କି ଅନାଥ ରାଜମାତାକୁ ଛଳନାରେ ଭୁଲାଇ ଅନାବିଶ୍ୱାସରେ ନିଜର ସ୍ୱାର୍ଥ ସିଦ୍ଧ କରିଛ—ତୁମ୍ଭେ ସେହି ଶଠ ଦସ୍ୟୁ, ଯେ କି ଅଭିସନ୍ଧିକ ଛଳନାରେ ଏହି ସ୍ଥାନକୁ ଆସି ଉତ୍କଳେଶ୍ୱରର ଦୁର୍ଦ୍ଦଶା ଦର୍ଶନରେ ପରମ ଆନନ୍ଦ ଉପଭୋଗ କରୁଛ !

ଗୋବିନ୍ଦ—ଜଗନ୍ନାଥ ! ଜଗନ୍ନାଥ ! ଆଜି ଏ କ'ଣ ଶୁଣୁଛି ?—ଆକାଶ ! ତୁମ୍ଭେ ମୋ' ମୁଣ୍ଡ ଉପରେ ଭାଙ୍ଗି ପଡ଼ୁନାହିଁ କାହିଁକି ? ପୃଥିବୀ ! ତୁମେ ମୋର ପାଦତଳୁ ଘୁଞ୍ଚି ଯାଉନାହଁ କାହିଁକି ? ବିଦ୍ୟୁତ୍ ! ମୋର ଚକ୍ଷୁ ଝଲସି ଦେଉ ନାହଁ କାହିଁକି ? ବଜ୍ର ସାଇ ମୋର କର୍ଣ୍ଣ କୁହର ବଧିର କରି ଦେଉନାହଁ କାହିଁକି ?—ଗୋବିନ୍ଦ ଆଜି ଶଠ, ଦସ୍ୟୁ !—ପ୍ରତାପରୁଦ୍ର ଦେବଙ୍କ ମନ୍ତ୍ରୀ ଆଜି ସ୍ୱାର୍ଥପର—ବିଶ୍ୱାସଘାତକ !

କଲ୍ପତରୁ—ବାଃ ବାଃ ! ବେଶ୍ ଅଭିନୟ ଦେଖାଉଛ ତ, ବୃଦ୍ଧ ? ଦିଅ, ଗୋବର୍ଦ୍ଧନ ! ବୃଦ୍ଧକୁ ବକ୍‌ସିସ୍ ଦିଅ !

ଗୋବିନ୍ଦ—ମହାରାଜ ! (ନିଜ ମନେ) ନା—ବର୍ତ୍ତମାନ କୌଣସି କଥା କହିବା ଉଚିତ ନୁହେ, ଏ ସ୍ଥାନ ତ୍ୟାଗ କରିବା ହିଁ ବିଧେୟ । (ପ୍ରସ୍ଥାନୋଦ୍ୟତ)

କଲ୍ପତରୁ—କି, ଚାଲି ଯାଉଛ ଯେ ?—ଦିଅ, ଗୋବର୍ଦ୍ଧନ ! ଶୀଘ୍ର ବକ୍‌ସିସ୍ ଦିଅ !

ଗୋବିନ୍ଦ—ମହାରାଜ ! ଢେର ବକ୍‌ସିସ୍ ପାଇଛି—ବର୍ତ୍ତମାନ ଦାସକୁ ବିଦାୟ ଦିଅନ୍ତୁ !

କଳୁସ୍ତ—ତା ହୋଇପାରେ ନା—ଉପଯୁକ୍ତ ବକ୍‌ସିସ୍ ନ ଦେଇ ମୁଁ କଦାପି ବିଦାୟ କରିପାରେ ନାହିଁ ।

[ ଗଳାଧକ୍‌କା ଦେବାକୁ ଉଦ୍ୟତ
ହେବାବେଳେ ରାଣୀଙ୍କର ପ୍ରବେଶ ]

ରାଣୀ—ଆନତ କର ତୋ'ର ହସ୍ତ, ମୂର୍ଖ !—ଗୋବିନ୍ଦ ! ଏ'କ ବ୍ୟାପାର ଆଜ ?

ଗୋବନ୍ଦ—କିଛି ନାହିଁ, ମହାରାଣୀ ! ଆପଣ ବର୍ତ୍ତମାନ ଭିତରକୁ ଯାଆନ୍ତୁ—

ରାଣୀ—ନା, ଗୋବନ୍ଦ ! ମୁଁ ସମସ୍ତ ବିଷୟ ନ ଶୁଣି, ତାର ସମ୍ୟକ ବିଧାନ ନକରି ଏ ସ୍ଥାନ ତ୍ୟାଗ କରିପାରେର ନାହିଁ ।—କହ ମୂର୍ଖ, ତୋ'ର ଆଜ ଏ'କ ଅଚରଣ ?—କାହା ବିରୁଦ୍ଧରେ ହସ୍ତୋତ୍ତଳନ କରିଥିଲୁ—କାହାକୁ ଗଳାଧକ୍‌କା ଦେବାକୁ ଅଗ୍ରସର ହୋଇଥିଲୁ ?—ଜାଣୁ ନା, କିଏ ସେହି ମହାଜନ ?—

କଳୁସ୍ତ—ଜାଣେ ମା ! ସେହି ମହାଜନ ସେ, ଯେ କି ଏକାଧାରେ ଶଠ, ଦସ୍ୟୁ ବିଶ୍ୱାସଘାତକ !

ରାଣୀ—(ସକ୍ରୋଧେ) କଳୁ !

କଳୁସ୍ତ—ମା !

ରାଣୀ—ଏଡ଼େ ମୂର୍ଖ—ଏଡ଼େ ନରାଧମ ତୁହି ? ଯା'ଙ୍କ ହେତୁରୁ ଆଜ ମନୁଷ୍ୟପଦବାଚ୍ୟ ହୋଇଛୁ—ଯା'ଙ୍କ ହେତୁରୁ ତୁ ଆଜ ରାଜପଦରେ ପ୍ରତିଷ୍ଠିତ ହୋଇଛୁ—ଯା'ଙ୍କ ହେତୁରୁ ପ୍ରଜାଗଣ ଆଜ ତୋର ଜୟଗାନ କରୁଛନ୍ତି, ତାଙ୍କର ଲାଞ୍ଛନା, ତାଙ୍କର ଅବମାନନା; ପୁଣି ନିଜ ହସ୍ତରେ—ମୋର ସମ୍ମୁଖରେ ? ଅସହ୍ୟ—ନିତାନ୍ତ ଅସହ୍ୟ !

ଗୋବନ୍ଦ—ମହାରାଣୀ ! ସ୍ଥିର ହେଉନ୍ତୁ ! ମହାରାଜ ଯେ ବର୍ତ୍ତମାନ ହିତାହିତ ଜ୍ଞାନଶୂନ୍ୟ ।

କଳୁସ୍ତ—ବକ୍ତା ନିଜେ ହୋଇପାରେ, ବୃଦ୍ଧ—

ରାଣୀ—ଦୂରହ' ସମ୍ମୁଖରୁ, ପାଷଣ୍ଡ !—ତୋର ମୁଖ ଦର୍ଶନରେ ମଧ୍ୟ ପାପ ।

କଳୁସ୍ତ—(ଯାଉଁ ଯାଉଁ) ତୋ'ର ଭଙ୍ଗା ତେଜ୍ କପାଳ, ବୃଦ୍ଧ !

( ଗୋବର୍ଦ୍ଧନ ସହିତ ପ୍ରସ୍ଥାନ )

ରାଣୀ—ଗୋବନ୍ଦ—! ଗୋବନ୍ଦ ! ଏହି କି ଶିକ୍ଷା—ଏହି କି ଉପଯୁକ୍ତତା, ମୂର୍ଖର— ଯାହା ଦେଖି ଏହି ବିଶାଳ ରାଜ୍ୟଭାର—ଲକ୍ଷ ଲକ୍ଷ ନିରୀହ ପ୍ରଜାଗଣଙ୍କର ରକ୍ଷଣା ବେକ୍ଷଣ ଭାର ତା' ହସ୍ତରେ ସମର୍ପଣ କରିଅଛ ?—ଏହିକ୍ଷଣି ତାକୁ ସିଂହାସନଚ୍ୟୁତ କରି—ଏହିକ୍ଷଣି ତାକୁ ରାଜ୍ୟ ସୀମାରୁ ଦୂର କରି ଦିଅ !—ସର୍ବାଗ୍ରେ, ମୁହିଁ ଜଣେ ସ୍ୱଦେଶ ହିତୈଷୀ ପ୍ରଜା, ଯେ କି ଏ ରାଜ-ବିଦ୍ରୋହ ଉତ୍ତେଜନା କରିବାକୁ ବୃଦ୍ଧାଙ୍ଗୁଷ୍ଠିରେ ସର୍ବ ସମକ୍ଷରେ ଦଣ୍ଡାୟମାନ—

ଗୋବନ୍ଦ—ମା ! ସ୍ଥିର ହେଉନ୍ତୁ ! ସନ୍ତାନ କ'ଣ ମା ନକଟରେ ସମୟେ ସମୟେ ଦୋଷ କରେ ନାହିଁ ? ସାନଭାଇ କ'ଣ ବଡ଼ ଭାଇ ନକଟରେ ବେଳେ ବେଳେ ଅପରାଧ କରେ ନାହିଁ ?—ଏଥି ନମନ୍ତେ କ ମା, ଭାଇର ଯଥାକ୍ରମେ ସନ୍ତାନ ଓ କନଷ୍ଠଭ୍ରାତା ପ୍ରତ କ୍ରୋଧାନ୍ଧ ହେବା ଉଚତ ?—ବରଂ ଦୁଃଖ କରବା ଉଚତ, କେଉଁ ଉପାୟରେ ତା'ର ସଂଶୋଧନ ହେବ—କେଉଁ ଉପାୟରେ ତା'ର ଭବଷ୍ୟତ ମଙ୍ଗଳମୟ ହେବ ।—

ରାଣୀ—ଗୋବନ୍ଦ ! ଗୋବନ୍ଦ ! ଏତେ ମହତ୍ ତୁମ୍ଭେ !—ଅଧମ ସନ୍ତାନ ପାଇଁ ମା'ଙ୍କୁ ତା'ର କ୍ଷମାକର !

ଗୋବନ୍ଦ—ମା ! ଏ ଦୀନ ସନ୍ତାନର ସହନ୍ତ ଅଜ ଏ କ ଆଚରଣ ? ଏ ଯେ ତୁମ୍ଭର ଚରଣର ଚର ଦାସ, ମା !

ରାଣୀ—କୁହ, ଗୋବନ୍ଦ ! ଚଙ୍ଗଳର ସହତ ବବାହ ପ୍ରସ୍ତାବ ଭାଙ୍ଗିଯିବାରୁ କ'ଣ କଳୁର ମୋ'ର ଏହ ଦଶା ହେଲ ?

ଗୋବନ୍ଦ—ତା'ଙ୍କ ପର ଜ୍ଞାନୀ ଓ ବବେକୀ ଲୋକଙ୍କ ଏହ ସାମାନ୍ୟ ବବାହ କାରଣରୁ ଏପର ଅଧଃପତନ ଘଟିବା ସମ୍ଭବ ବୋଧ ହେଉଁ ନାହିଁ ।

ରାଣୀ—ତେବେ, କ କାରଣ ଅନୁମାନ କରୁଅଛ ?

ଗୋବନ୍ଦ—ଏହ ଗୋବର୍ଦ୍ଧନ ହିଁ ସବୁ ଅନର୍ଥର ମୂଳ ।

ରାଣୀ—ଗୋବର୍ଦ୍ଧନ ?

ଗୋବନ୍ଦ—ନଶ୍ଚୟ, ମହାରାଣୀ ! ଏଥିଲଗି ମୁହିଁ ଦୋଷୀ—ଆଜ ସେହ ମୂଳୋତ୍ପାଟନ କରୁଛି—

(ପ୍ରସ୍ଥାନ)

ରାଣୀ—ଗୋବନ୍ଦ ! ତୁମ୍ଭେ ହିଁ ନଃସହାୟାର ଏକମାତ୍ର ସହାୟ !

—*—

ତୃତୀୟ ଦୃଶ୍ୟ :—

( କକ୍ଷ )

[ ରଙ୍ଗିଲ ପ୍ରବେଶ କଲେ ]

ରଙ୍ଗିଲ—ଆଜି ଅନେକ ଫୁଲ ତୋଳିଛି—ଯାଏଁ, ବସି ବସି ମୋଡ଼ିଏ ଭଲ ହାର ଗୁନ୍ଥେ। —ଗୋଟିଏ ହାର ପ୍ରଭୁ ତାଙ୍କର ଇଷ୍ଟଦେବତାଙ୍କୁ ପିନ୍ଧେଇବେ—ଆଉ ଗୋଟିଏ ହାର ମୋର ଇଷ୍ଟଦେବତାଙ୍କୁ ମୁଁ ପିନ୍ଧାଇବ !

—ଗୀତ—

ଆଜି ଦେବ ଉପହାର
ଅତି ଯତ୍ନେ ଗୁନ୍ଥା— ପ୍ରାଣ ଦେଇ ଗୁନ୍ଥା
ଏ କୁସୁମ ହାର ।
(ଯେବେ) ତରୁଣ ଅରୁଣ କିରଣେ ଭୁବନ
ହସୁଥିଲା ମନ୍ଦ ମନ୍ଦ,
ଶିଶିର ସିଞ୍ଚିତ, ଶୀତଳ ସମୀରେ
ଲଭୁଥିଲା ମହାନନ୍ଦ
(ତେବେ) ଭକ୍ତି-ପୂତ ହୃଦେ ତୋଳି ଧୀରେ ପଦେ
ଗୁନ୍ଥିଛି ଏ ହାର ।

[ ଜଗଦମ୍ବା ପ୍ରବେଶ କଲେ ]

ଜଗଦମ୍ବା—ବେଶ୍ ବେଶ୍, ବୌ ! ବସି ବସି ଗୀତ ଗାଉଥାଅ—ହାର ଗୁନ୍ଥୁଥାଅ—ପାଇଟି କରିବାକୁ ତ ପୋଇଲିଟିଏ ରଖିଦେଇଛ, ଭାବନା କଣ ?

ରଙ୍ଗିଲ—ମା ! କନ୍ୟା ସଙ୍ଗେ ମାତାର ଏପରି ବ୍ୟଙ୍ଗ କି ସାଜେ ?—ଆଦେଶ କର ମା, କି କାମ ବାକି ଅଛି, କରିବାକୁ ହେବ ?

ଜଗଦମ୍ବା—କି କାମ ବାକି ଅଛି କରିବାକୁ ହେବ ? ନିତି ନିତି କି କାମ କର, ତା ସବୁ ଭୁଲିଗଲ ? ହଁ, ଭୁଲି ଯିବନାହିଁ କାହିଁକି ?—ଗୋଟିଏ ପୁଅର ବୋଟିଏ ବୋହୂ—ଗେହ୍ଲାବୋହୂ ! ମୁଁ ତ ଛତରଖାଇ ଗୋଟାଏ ପଡ଼ିଛି ଗଣ୍ଡାଏ ଯେମିତି ଖାଇବ—କାମ ବି ସେମିତି କରିଦେବ !

ରଙ୍ଗିଲ—ମା ! କାହାକୁ କ'ଣ କହୁଛନ୍ତି ? କାହାର ଏ ଘର ? କାହା ସକାଶେ ଏ ଦାସୀ ? —କ୍ଷମା କର ମା, ଆଜି ପ୍ରତ୍ୟୁଷରୁ ସବୁ କାମ ସାରି ଦେଇଛି ।

ଜଗଦମ୍ବା—ପ୍ର-ତୁ-ଷ-ରୁ ! ଦେଖାଇ ହେଉଛୁ, ଘର କାମ କଲାବାଲା ଅଉ ମୁଁ ଅଳଟସଇ ?
କାଲି ବେଶି ରାତିଯାଏ ଜାଗିଥିଲ ବୋଲି ସକାଳକୁ ଟିକିଏ ନିଦ ଲାଗି ଯାଇଥିଲା—
ଏଇଥିପାଇଁ ରୁଷା ହେଉଛୁ କ'ଣ ନା, ପ୍ରତ୍ୟୁଷରୁ !—ଏ ଘର ସକାଳୁ ଉଠିଲାବାଲା !
—ନେ'ମ, ମୋର କିଏ ସ୍ୱାମୀ ସଙ୍ଗରେ ଏତେ ବକର ବକର ହେବ—

[ ବେଗେ ପ୍ରସ୍ଥାନ ]

ରଙ୍ଗିଲା—କୌଣସି ଉପାୟରେ ତ ମା'ଙ୍କ ମନ ପାଇଲି ନାହିଁ ?—ହାୟ ! ମୋ ମନରେ
ଭାରି କଷ୍ଟ ଯେ, ମା'ଙ୍କୁ ସନ୍ତୁଷ୍ଟ କରି ପାରୁ ନାହିଁ ।

[ ଅର୍ଜ୍ଜୁନ ପ୍ରବେଶ କରି ]

ଅର୍ଜ୍ଜୁନ—କି ପ୍ରିୟେ ! ଛିଡ଼ାହୋଇ କ'ଣ ଭାବୁଛ ?
ରଙ୍ଗିଲା—କିଛି ନାହିଁ ।
ଅର୍ଜ୍ଜୁନ—ଆମ ପାଖରେ ମିଛ ?
ରଙ୍ଗିଲା—ଆଚ୍ଛା, ବୈଦ୍ୟ ମହାଶୟ ! ମୁହଁ ଦେଖି ରୋଗ ଧରୁଛ ବେଶ୍—ମାଟି ତାର
ଔଷଧି ତିଆରି କରି ପାରିବ ନା ?
ଅର୍ଜ୍ଜୁନ—ଏହି ଶୁଚ ଔଷଧି—ସ୍ୱାମୀକୁ ବଶ କରିବା ଔଷଧି ତ ?
ରଙ୍ଗିଲା—ହେଲା ନାହିଁ—ହେଲା ନାହିଁ ।—ସ୍ୱାମୀ ତ ନିଜେ ବଶ—ବଶ କରିବା ଔଷଧିର
ପୁଣି ଦରକାର କଣ ?
ଅର୍ଜ୍ଜୁନ—ହଁ—ଏତେ ଗର୍ବ ? ଜାଣ, ମନ କଲେ ଅଚିରେ ତୁମ୍ଭଙ୍କୁ ମୁଁ ତ୍ୟାଗ କରିପାରେ ?
ରଙ୍ଗିଲା—ଆଚ୍ଛା, କ୍ରୋଧ ସମ୍ବରଣ କର ।—ବର୍ତ୍ତମାନ କହିଲ, କି ଉପାୟ କଲେ ମା'ଙ୍କୁ
ମୁଁ ସନ୍ତୁଷ୍ଟ କରି ପାରିବି ।
ଅର୍ଜ୍ଜୁନ—(ହାସ୍ୟକରି) ମା'ଙ୍କୁ ସନ୍ତୁଷ୍ଟ କରିବ କ'ଣ ? —ସେ ତ ସନ୍ତାନ ପ୍ରତି ସର୍ବଦା
ସନ୍ତୁଷ୍ଟ ।
ରଙ୍ଗିଲା—ତେବେ ଏ ଦୀନା-କନ୍ୟା ପ୍ରତି ମା ଏପରି ବିମୁଖ କାହିଁକି ?
ଅର୍ଜ୍ଜୁନ—ମା' ସନ୍ତାନ ପ୍ରତି ବିମୁଖ ! ଅସମ୍ଭବ—ତୁମେ ବୁଝି ପାରୁ ନାହଁ ।
ରଙ୍ଗିଲା—କିପରି ?
ଅର୍ଜ୍ଜୁନ—ଜାଣ, ସଙ୍ଗାତ ଆଜି ମୋତେ ଡକାଇ ପଠାଇଥିଲେ ।
ରଙ୍ଗିଲା—ସେଇଥିପାଇଁ କଣ ମାମୁଁ ତୁମକୁ ଘରେ ଖୋଜୁଥିଲେ ?
ଅର୍ଜ୍ଜୁନ—ହଁ ।
ରଙ୍ଗିଲା—କାହିଁକି ଡକାଇ ଥିଲେ ?
ଅର୍ଜ୍ଜୁନ—ଗୋଟିଏ ରୋଗୀର ଚିକିତ୍ସା କରିବା ନିମନ୍ତେ ।

ରଙ୍ଗିଲା—କିପରି ଦେଖିଲ ?

ଅର୍ଜ୍ଜୁନ—ଦେଖିଲି କେଉଁଠି ? ମୋତେ ଯେ ବର୍ତ୍ତମାନ ଯିବାକୁ ହେବ ।

ରଙ୍ଗିଲା—କେଉଁଠି ସେ ରୋଗୀ ?

ଅର୍ଜ୍ଜୁନ—ବାଲେଶ୍ୱରରେ—

ରଙ୍ଗିଲା—ବାଲେଶ୍ୱର ?—ଏତେ ଦୂର ?—ସେଇଥିପାଇଁ ପରା କହୁଥିଲି, ମନ କଲେ ଅଚିହ୍ନକା ମୁଁ ତୁମକୁ ତ୍ୟାଗ କରିପାରେ ?—

ଅର୍ଜ୍ଜୁନ—କେମିତି—ମୁଁ କଥା ଅନୁଯାୟୀ କାମ କରେ କି ନାହିଁ ?

ରଙ୍ଗିଲା—ଏତେ ଦୂରକୁ ଯିବ ନା ?

ଅର୍ଜ୍ଜୁନ—ରୋଗୀ ଦେଖିବାକୁ ହେଲେ ଦୂର କଣ, ନିକଟ କଣ ?

ରଙ୍ଗିଲା—ରାଜ୍ୟରେ ଆଉ କଣ କେହି ବୈଦ୍ୟ ନ ଥିଲେ ?

ଅର୍ଜ୍ଜୁନ—ରୋଗୀ ଜଣେ ସଙ୍ଗୀତଜ୍ଞଙ୍କର ଖାସ ଆତ୍ମୀୟ । ଆଉ ସଙ୍ଗୀତଜ୍ଞଙ୍କର ଖାସ ଜିଦ୍ ଯେ, ମୋ ଦ୍ୱାରା ତାଙ୍କର ଚିକିତ୍ସା ହେଉ ।—ଏତେ ପ୍ରବୀଣ ବୈଦ୍ୟ ଥାଉଁ ଥାଉଁ ସଙ୍ଗୀତେ ଯେ ମୋ ଉପରେ ଏ ଭାର ଦେଲେ, ଏଥିରୁ କଣ ବୁଝି ପାରୁଛ—ପ୍ରେମବନ୍ଧନ ଅଚ୍ଛେଦ୍ୟ । ମା, ବାପାଙ୍କର କଥା ତ ଦୂରେ—ଯେ ଯା'କୁ ଥରେ ସୁ-ନଜରରେ ଦେଖିଯାଏ, ତାକୁ କି ସେ କେବେ ଠେଲି ଦେଇପାରେ ?—ସତେ ପ୍ରିୟେ, ମୋର ଆଜି ଭାରି ଆନନ୍ଦ ହେଉଛି—

ରଙ୍ଗିଲା—ପ୍ରିୟତମ !

ଅର୍ଜ୍ଜୁନ—ସତେ ପ୍ରିୟେ ! ତୁମକୁ ବିବାହ କରିବା ଦିନୁ ମୋ ପ୍ରତି ସଙ୍ଗୀତଜ୍ଞଙ୍କର ଯେପରି ବ୍ୟବହାର ଦେଖୁଥିଲି, ସେଥିରେ ମନରେ ବଡ଼ କଷ୍ଟ ହେଉଥିଲା । ମୁଁ ବରାବର ଚିନ୍ତା କରୁଥିଲି 'ହାୟ ହାୟ—ଏହି ଛାର ବିବାହ ନିମନ୍ତେ ସିନା ଶେଷେ ସଙ୍ଗୀତ ସଙ୍ଗୀତ ଭିତରେ ଅପଡ଼ ହେଲା ।'

ରଙ୍ଗିଲା—ହଉ, ଥାଉ ଥାଉ—ଆମର ଶୁଣିବାର ଦରକାର ନାହିଁ ।

ଅର୍ଜ୍ଜୁନ—ଶୁଣନା—ମୁଁ ଅନୁଭବ କରୁଥିଲି, ଯଦି ଏ ବିବାହ ଓଲଟି ଯିବାର ହୋଇଥାନ୍ତା, ତାହାହେଲେ ପରା ମୁଁ ଆନନ୍ଦର ସହିତ ଏଥିରେ ସମ୍ମତି ଦେଇଥାନ୍ତି ।

ରଙ୍ଗିଲା—ହାଁ, ଏତେଦୂର !—ଏହି ପରା ତୁମର ସ୍ତ୍ରୀ ପ୍ରତି ଅନୁରାଗ ?

ଅର୍ଜ୍ଜୁନ—ପ୍ରକୃତରେ ପ୍ରିୟେ ! ବିବାହ ଦିନୁଁ ଏ ଯାବତ୍ ଆନନ୍ଦ ପାଇବା ଠାରୁ ବରଂ ଦୁଃଖ ପାଉଥିଲି ।—ଏତେ ଦିନର ବନ୍ଧୁତ୍ୱ, ଖାଲି ଗୋଟାଏ ସାମାନ୍ୟ ବିବାହ ସକାଶେ ଭାଙ୍ଗିଯିବା କି କମ୍ ପରିତାପର ବିଷୟ ?

ରଙ୍ଗିଲା—ତୁମେ ତେବେ ମୋତେ ବାପଘରକୁ ପଠାଇ ଦେଇ ବନ୍ଧୁଙ୍କୁ ନେଇ ରହୁନାହିଁ ?

ଅର୍ଜୁନ—ସତକରି କହିଲ ପ୍ରିୟେ, ତୁମ୍ଭେ କଣ ତାଙ୍କୁ ଏକାବେଳକେ ପାଶୋରି ଗଲ ?—ପିଲାଦିନୁଁ ପରସ୍ପର ମଧ୍ୟରେ ଏତେ ବନ୍ଧୁତ୍ୱ—ଏତେ ପ୍ରୀତି, ସବୁ କଣ ଏହି ସାମାନ୍ୟ ବିବାହ କାରଣରୁ ଏକାବେଳକେ ଭାଙ୍ଗିଗଲା ?

ରଙ୍ଗିଲା—ମୁଁ ଏତେକଥା ଜାଣେ ନାହିଁ, ଯାଏଁ ନେତେଣେ ମା ଖୋଜୁଥିବେ ।

ଅର୍ଜୁନ—ଯାହା ହେଉ, ପ୍ରିୟେ—ମୋର ଆଜି ଭାରି ଆନନ୍ଦ ଯେ, ଆମ୍ଭମାନଙ୍କର ବନ୍ଧୁତ୍ୱ ନଷ୍ଟ ନ ହୋଇ ସେହିପରି ଉଜ୍ଜ୍ୱଳ ରହିଅଛି ! ଆଜି ଯେତେବେଳେ ସଙ୍ଗାତ ଆଦର ଯତ୍ନ କରି ପାଖରେ ବସାଇଲେ—ପରସ୍ପର ପରସ୍ପର ମଧ୍ୟରେ ରଙ୍ଗରହସ୍ୟ ଚଳିଲା, ମୋର ମନେ ହେଲା, ମୁଁ ଯେପରି ନନ୍ଦନକାନନରେ ବୁଲୁଛି—ଅପ୍ସରାମାନଙ୍କ କଥାବାର୍ତ୍ତା ଶୁଣୁଛି । ମୁଁ ଆଜି ବେଶ୍ ବୁଝୁଛି, ପ୍ରିୟେ - ଯେ ଯା'କୁ ଥରେ ଭଲପାଏ, ହଜାରେ ବିଘ୍ନ ସତ୍ତ୍ୱେ ସେ ତାକୁ କେବେ ଛାଡ଼ି ପାରେ ନାହିଁ—ସୁତରାଂ ମା ହିଁଅର, ବାପ ପୁଅର କଥା କଣ କହୁଛ—ମଣିଷ କି କେବେ ମଣିଷକୁ ଘୃଣା କରି ପାରେ ? ଯାଏଁ, ବର୍ତ୍ତମାନ ବନ୍ଧୁଙ୍କ କାର୍ଯ୍ୟରେ ବାହାରେ । (ପ୍ରସ୍ଥାନୋଦ୍ୟତ)

ରଙ୍ଗିଲା—ବର୍ତ୍ତମାନ କ'ଣ ବାହାରିଲ—ଖାଇ ନାହଁ, ପିଇ ନାହଁ—ଲୁଗାପଟା, କିଛିସବୁ କିଛି ସଜାଇ ହୋଇନାହିଁ !

ଅର୍ଜୁନ—ତୁମେ ସେ ସବୁ ଶୀଘ୍ର କରି ଦିଅ—ମୁଁ ଔଷଧ ପତ୍ର ଠିକ୍‌ଠାକ୍ କରିଦିଏ । ରୋଗୀର କଥା—ବିଳମ୍ବ କଲେ ଚଳିବ କି ? ( ପ୍ରସ୍ଥାନ )

ରଙ୍ଗିଲା—ଏହି ଦେବୋପମ ସ୍ୱାମୀର କି ମୁଁ ଦାସୀର ଯୋଗ୍ୟ ?—କି ସରଳ ବିଶ୍ୱାସ ! କି ନିଷ୍କପଟ ବନ୍ଧୁତ୍ୱ ! କି ପବିତ୍ର ପ୍ରେମ ! ଯାଏଁ, ମୋର ଯାହା କର୍ତ୍ତବ୍ୟ, ମୁଁ କରେ ।

---

ତୃତୀୟ ଦୃଶ୍ୟ :—

( ପୁଷ୍ପବାଟିକା )

[ ସଖୀମାନେ ପ୍ରବେଶ କର ]

୧ମା ସଖୀ—ଆଜି ମନ୍ତ୍ରୀଙ୍କ ବଗିଚାରେ ତ ଭାରି ଫୁଲ ଫୁଟିଛି ।
୨ୟା — ସତେ କି ଚୁରିଆଡ଼େ ଯେପରି ହସ ଖେଳ ଭରା ହୋଇଛି ।
୩ୟା — ରାଜା-ରାଣୀ ଖେଳ ଏବା ଆଜି ବେଶ୍ ଯେନେଇବ ।
୪ର୍ଥୀ — (ପ୍ରବେଶ କରି) ଆଲେ ଆଲେ, ଛୁଡ଼ା ହୋଇଛ କ'ଣ ? ରାଜା ରାଣୀ ଯେ ବଳେ କଲେଣି —
୧ମା — ଆସ ଆସ, ବନ୍ଦେଇବାକୁ ହବ ପରା ?

[ ସଖୀଗଣ ଭିତରକୁ ଯାଇ, ଫୁଲରାଜା ଓ ଫୁଲରାଣୀ ବେଶ ଧାରଣ କରିଥିବା କଥରୂପ୍ଷ ଓ କମଳାଙ୍କୁ ପରିବେଷ୍ଟନ କରି ଗୀତ ଗାଇ ଗାଇ ପ୍ରବେଶ କଲେ ]

— ଗୀତ —

ବିଜେ କର ଧୀରେ ରାଜା ରାଣୀ —
ଜଳଦର ସ୍ୱନେ କମ୍ପାଇ ଭୁବନେ
ଗର୍ଜିଉଠୁ ଜୟ ଜୟ ବାଣୀ ।
ଦୀନ ହୀନ ଆମ୍ଭେ ପ୍ରଜାଗଣ ଭବେ
କିବା ଅଛି ଦେବୁଁ ଉପହାର ?
ଦୟାକରି ଆସିଛ କୁଟୀରେ ଯେବେ
ଧର ଭକ୍ତି-ହାର ଦେଉଁ ଆଣି ।।
ତବ ଯୋଗ୍ୟାସନ ରତ୍ନ ସିଂହାସନ
କାହୁଁ ଦେବା ଅମ୍ଭେ, ହୋଇ ଅକଞ୍ଚନ
ଦେଉଛୁଁ ହେ ପାତ. ଏ' ଦରିଦ୍ର-ଗୃହ
ବସ ବସ ଦେଇ ଆଶୀର୍ବାଣୀ ।।

[ ଜଗଦମ୍ବା ପ୍ରବେଶ କରି ]

ଜଗଦମ୍ବା—ସନ୍ଧ୍ୟା ଆସି ହେଲାଣି, ତୁମ୍ଭମାନଙ୍କର ଖେଳ କ'ଣ ଭାଙ୍ଗିନାହିଁ ?

କମଳା — ମା ! ସନ୍ଧ୍ୟା ତ ହୋଇନାହିଁ —

ଜଗଦମ୍ବା — କଲେ ! ତୁ ତ କଣ ଘାଗ ବଡ଼ି ବଡ଼ି କଥା କହି ଶିଖିଲୁଣି ? କଥା ଉପରେ କଥା ! — ଯା, ଘରକୁ ଯା —

କଥରୁଦ୍ର — ନୂଆବୋଉ ! ଅଜ ଏତେ ରାଗ କାହିଁକି ?

ଜଗଦମ୍ବା — ରାଗ ? ମଲାମ, ରାଗିଲି କେତେବେଳେ ? ବଡ଼ଲୋକଙ୍କ ସବୁ ସୁନ୍ଦର — ଗରିବ ଲୋକ ହସି କଥା କହିଲେ ବି ସେ ହେଲା ରାଗ —

କଥରୁଦ୍ର — ନୂଆବୋଉ ! ତୁମର କଣ ଅଜି ମୁଣ୍ଡ ଠିକ ନାହିଁ ?

ଜଗଦମ୍ବା — ଗରିବ ଲୋକର କି ଆଉ ମୁଣ୍ଡ ଅଛି, ଠିକ୍ ରହିବ ? ଦେଖ କଥ, ତୁମେ ବଡ଼ଲୋକ — ରାଜା ପିଲା — ଗରିବ ଲୋକ ସଙ୍ଗେ ମିଶିବା ତୁମର ଉଚିତ ନୁହେଁ ।

କଥରୁଦ୍ର — ଆଜି ଏ କଣ କହୁଛନ୍ତି ନୂଆବୋଉ ?

ଜଗଦମ୍ବା — ତୁମର ମା ପରା କହୁଛନ୍ତି, ଗୋବରା ସଙ୍ଗେ ମାଙ୍ଗ ହୋଇ ରାଜା ବିଗିଡ଼ି ଗଲେ । — କମଳି ତ ଗୋବରାର ଭଉଣୀ — ମୁଁ ତ ଗୋବରା ଭଉଣୀ — ଆମ ସଙ୍ଗେ ମିଶିଲେ, ତୁମେ ଯଦି ବିଗିଡ଼ି ଯାଅ ?

କଥରୁଦ୍ର — ନୂଆବୋଉ । କ'ଣ କହୁଛ, ମୁଁ ବୁଝିପାରୁ ନାହିଁ ?

ଜଗଦମ୍ବା — ତୁମେ ବୁଝ ଆଉ ନ ବୁଝ, ମୁଁ ସାଫ୍‌କଥା କହିଦେଉଛି, ଏଣିକି ଆଉ ତୁମେ ଆମ ଘରକୁ ଆସିବ ନାହିଁ କି କମଳି ଆଉ ତୁମ ଘରକୁ ଯିବନାହିଁ । — ଚାଲିଲେ କମଳି ଚାଲ ।

[ ହାତ ଧରି ଟାଣିନେଇ ଯିବା ସମୟରେ କମଳା କଥରୁଦ୍ର ଆଡ଼େ ବାରମ୍ବାର ଶୋକ ଦୃଷ୍ଟି ନିକ୍ଷେପ କରୁଥିଲା ]

କଥରୁଦ୍ର — ସହି ! ସହି ! ଆଜିଠୁଁ କଣ ଆମର ଖେଳ ଭାଙ୍ଗିଗଲା ?

[ ଦୁଃଖରେ ମଣିମାନଙ୍କ ଉପରେ ଚାଳପତ୍ର ପ୍ରସ୍ଥାନ କଲେ ]

[ ଗୋବର୍ଦ୍ଧନ ଓ ଜଗଦମ୍ବାର ପ୍ରବେଶ ]

ଗୋବର୍ଦ୍ଧନ — ଚୁପ୍ !

ଜଗଦମ୍ବା — ଗୋବରାରେ !

ଗୋବର୍ଦ୍ଧନ — ଫେର୍, ଚୁପ୍ କରନା !

ଜଗଦମ୍ବା — ମୁଁ ଯେ ଚୁପ୍‌କରି ପାରୁନାହିଁ, ରେ ଗୋବରା ?

ଗୋବର୍ଦ୍ଧନ — ତୁ ଯଦି ଏମିତି ହେବୁ, ତାହାହେଲେ ଆଉ ମୁଁ ଆସିବି ନାହିଁ ।

ଜଗଦମ୍ବା—(ଲୁହ ପୋଛି) ନା, ଗୋବିନ୍ଦ ! ତୁ ଏପରି କହନା । ତୋତେ ନ ଦେଖିଲେ ବଞ୍ଚିପାରିବି ନାହିଁ ରେ !

ଗୋବର୍ଦ୍ଧନ—ସେଥିପାଇଁ କହୁଛି ମୋତେ ଯେବେ ଦେଖିବାକୁ ଚାହୁଁ—ମୁଁ ଯେଉଁପରି କହୁଛି, ତୁ ସେହିପରି କର !

ଜଗଦମ୍ବା—କହ ଗୋବିନ୍ଦ, କ'ଣ କରିବାକୁ ହେବ ? ତୁ ଯାହା କହିବୁ, ମୁଁ ତାହା ହିଁ କରିବି ରେ ।

ଗୋବର୍ଦ୍ଧନ—ଦେଖ୍, ଭେଣେଇ ମୋତେ ବାହାର କରିଦେଇଛନ୍ତି ବୋଲି ତୁ ଯେପରି ତାଙ୍କ ସଙ୍ଗେ କଳି ନ କରୁ—କି ତାଙ୍କୁ ଗାଳି ନ ଦେଉ ।

ଜଗଦମ୍ବା—ଆଉ କ'ଣ ପ୍ରଶଂସା କରିବି ?

ଗୋବର୍ଦ୍ଧନ—ତା' ଯେବେ ପାରୁ ତ ଅତି ଉତ୍ତମ ।

ଜଗଦମ୍ବା—ମୁଁ ତା ପାରିବି ନାହିଁରେ—

ଗୋବର୍ଦ୍ଧନ—ଫେର୍—ତା' ହେଲେ— ( ପ୍ରସ୍ଥାନୋଦ୍ୟତ )

ଜଗଦମ୍ବା—ହଉ, ହଉ, ତୁ ଯା' କହିବୁ ମୁଁ ତାହା ହିଁ କରିବି; କିନ୍ତୁ କହ, ଗୋବିନ୍ଦ, ତୁ କେଉଁଠି ରହିବୁରେ ?—ତୋର ଖିଆ ପିଆ କିଏ ବୁଝିବରେ ?—

ଗୋବର୍ଦ୍ଧନ—ହାଃ-ହାଃ-ହାଃ—ରାଜା ଯେ ସମସ୍ତଙ୍କୁ ଲୁଚାଇ ଲୁଚାଇ ଏତେ ନୂଆ ନୂଆ ଦାସୀ ଚାକର ରଖିଛନ୍ତି, କାହାପାଇଁ ? ନଗର ବାହାରେ ନୂଆ କୋଠାଟାଏ ଯେ ତିଆରି ହୋଇଛି, କାହାପାଇଁ ?—ମୋ'ରି ପାଇଁ—ମୋ'ର ଚେହେରା, ମୋ'ର ବେଶଭୂଷାରୁ କଣ କିଛି ବୁଝି ପାରୁନାହୁଁ ? ସତେ ନାନି ! ରାଜାର ପାଖୁଆ ଲୋକର ତ ଏତେ ସୁଖ—ରାଜାର ନ ଜାଣେ କି ସୁଖ !—ଭେଣେଇଟା କି ବୋକା—ମନେ କଲେ ରାଜଗାଦିଟା ତାଙ୍କର । ବର୍ତ୍ତମାନ ଯେମିତି ସୁବିଧା ମିଳିଛି—

ଜଗଦମ୍ବା—ଅହା ! ଗୋବିନ୍ଦର ଆମର କି ବୁଦ୍ଧି !—ତାଙ୍କଠି ଭଲ ଏତିକିଟିକେ ଥାନ୍ତା ?

ଗୋବର୍ଦ୍ଧନ—ସେତିକିଟିକେ ବୁଦ୍ଧି ଥିଲେ କଣ ଆଜି ତାଙ୍କର ଏମିତି ଦଶା ହୋଇଥାନ୍ତା, ନାନି ? ରାଜା ଏତେ ଅପମାନ କଲେ, ଶେଷକୁ ବେକରେ ହାତଦେଇ ତଡ଼ି ଦେବାକୁ ବସିଲେ, ତେବେ ବି ଭଲ ହିତଟିଏ ଚାହିଁଥାନ୍ତି—ଯୁକ୍ତି କହିଲେ କି ନା, 'ପୁଅ ଦୋଷ କଲେ କଣ ବାପର ରାଗିବା ଉଚିତ ?'

ଜଗଦମ୍ବା—ଗୋବିନ୍ଦ ଆଉ ପୁଅ ନୁହେଁ—ଶତ୍ରୁ ? ଯେତିକି ଭଲ ସେହି ଶାପଖିଆ ଅର୍ଜ୍ଜୁନ ଆଉ ସେହି ମଦମତ ରଜା !—ଦେଖ, ସେହି ରାଣ୍ଡିର ପୁଣି କି କଥା—'ଗୋବିନ୍ଦ ମୋ ପୁଅକୁ ଖାଇଲା'—ଯେ ବି ମନ୍ତ୍ରୀ ହୋଇ ବୁଝିଲେ କ'ଣ ନା, 'ସବୁଦୋଷ ନନ୍ଦୀଘୋଷ'

—ହିଁ ହୋ, ଅପ୍ସରା ଉପରେ କାଣୀ ବଳେଇ ବି ଝାଣ ହୁଏ ।—ନା ଗୋବନ୍ଦ, ମୁଁ ଆଉ ଏଠି ରହିବ ନାହିଁ, ଯିବ—

ଗୋବର୍ଦ୍ଧନ—ପୁଣି ସେଇକଥା—ତା'ହେଲେ ମୁଁ— ( ପ୍ରସ୍ଥାନୋଦ୍ୟତ )

ଜଗଦମ୍ବା—କଣ କରୁଛୁ କର୍—ତୋ'ର ସକାଶେ ସବୁ ସହୁଛୁ ।

ଗୋବର୍ଦ୍ଧନ—ଜାଣୁ ନାନି, ମୋର ଏକା ଜଗର—ଦେଖେଇବ, ଅନଧାନ କଥା ସତ କି ମିଛ—ଗୋବର୍ଦ୍ଧନ ମଜକୁର୍ ନା ଅଜ୍ ମଜକୁର୍ ! ମୋ ପାଇଁ ନାନୀଙ୍କୁ ଅପମାନ ସହିବାକୁ ହେଲା—'ଗନ୍ଟ ମଜକୁର୍ ନ ହେଲେ ତା' ଉଦ୍ଧରେ ଜନ୍ଦତା ବଢ଼େଇବା ଉଚିତ୍,' ଏହା କଣ ଭୁଲିଗଲ୍ ନାନି ?

ଜଗଦମ୍ବା—ଏହା ଫେର୍ କବ ଆଉ ଆଉ ଭୁଲିବ ?

ଗୋବର୍ଦ୍ଧନ—ସେହି ଜଗରରେ ସେହି ଜଦିରେ ଜାଣୁ ନାନି, ଗୋବର୍ଦ୍ଧନ ଜୁଆ ଗୁଣ୍ଡ ସ୍ୱକଷ୍ଟ ନେଇଛୁ ।

ଜଗଦମ୍ବା—ଆହା ! ଗୋବନ୍ଦ ମୋର କି କଷ୍ଟ ନ କରୁଛି !

ଗୋବର୍ଦ୍ଧନ—ହାଃ-ହାଃ-ହାଃ – ଗୋବନ୍ଦ କଷ୍ଟ କରୁଛୁ ନା ଅସ୍ତମ୍ କଲ୍ଲୁଛୁ ? ପ୍ରଥମ ଗୁଜାଙ୍କ ଥିଲ ରାଜାଙ୍କ ଦରକର୍—କିନ୍ତୁ ବର୍ତ୍ତମାନ, ଏକଦମ୍, ଭେନ୍ରେଇଙ୍କ ଉପରେ !—ଶୁଣିଛୁ ତ, ମୋ ପାଇଁ କେମିତି ତାଙ୍କୁ ଗାଳି ଖାଇବାକୁ ହେଲା ?

ଜଗଦମ୍ବା—ଅଚ୍ଛା, ସେ କାହିଁକି ଏତେ ଅପମାନ ପାଇ ସୁଦ୍ଧା କିଛି କହୁ ନାହାନ୍ତି ?—କିଛି ବୁଝି ପାରୁନାହିଁ ।

ଗୋବର୍ଦ୍ଧନ—ଗୁଡ଼ଦେ ନାନି ! ସେ କିଛି ନ କହନ୍ତୁ କି ନ କରନ୍ତୁ, ମୁଁ ସବୁ କରିଦେଉଛୁ । ଯେଉଁ ଫାସ ବସେଇଲଣି ନାନି, ସେଥିରେ କି ଆଉ ବାକି ଅଛି ରହୁଛୁ—ତୁ ଖାଲି ଡୋର ଟାଣିବାକୁ ସଙ୍ଗେ ସଙ୍ଗେ ଥିଲେ ହେଲା ।—ରହ, ଭେନ୍ରେଇ ଆସୁଛନ୍ତି ପରା ? —ମୁଁ ଆସୁଛି, ନାନି—ପୁଣି କାଲି । (ସ୍ୱଗତଃ) ବଡ଼ ମଜା ଲଗିଛୁ—ଜୁଆ ଖେଳରେ କି ଏ ମଜା ଅଛି ? [ ଗୋବର୍ଦ୍ଧନ ପ୍ରସ୍ଥାନ କଲ ]

[ ଗୋବନ୍ଦ ପ୍ରବେଶ କଲ ]

ଗୋବନ୍ଦ—କନଆକବୀ ! କମଳାକୁ କଣ କହିଲ କି ? ସେ ଘରେ ବସି କାନ୍ଦୁଛି, ଆଉ କଥା ମଧ କହୁନାହିଁ । ଶୁଣିଲି ରୁଷି କରି ବସିଛି, ରାଣୀମା ଯେତେ ଡାକଲେ ସୁଦ୍ଧା ଶୁଣୁ ନାହିଁ ।

ଜଗଦମ୍ବା—ମୋର ତ ସବୁ ଦୋଷ ! ମୁଁ ତ ସେହିଦନୁ କହୁଛୁ—ମୋତେ ପୁରୀ ପଠେଇ ଦିଅ – ଜଗନ୍ନାଥ ଦର୍ଶନ କରିବ, ନର୍ଦ୍ଦିନ୍ତ ରହିବ । ଏତେ ଜଞ୍ଜାଳ ଆଉ ସମ୍ଭାଳି ପାରିବ ନାହିଁ ।

ଗୋବିନ୍ଦ – କଷ୍ଟାଳତ ନିଜେ ଲଗାଇ ଦେଉଛ, ସମ୍ଭାଳିଲା ବେଳକୁ ଏତେ ବ୍ୟସ୍ତ ହେଉଛ କାହିଁକି ?

ଜଗଦମ୍ବା – ହଁ, କହିବ ନାହିଁ ଜାହିଁକି ? ବାପଘରେ ଥିଲେ କଣ – ( କାନ୍ଦିବା )

ଗୋବିନ୍ଦ – ଏହିଥର ଟପ ଟପ ହୋଇ ବର୍ଷା ଆରମ୍ଭ ହେଲା ଯେ ! ତୁମେ ଯା' କରୁଛ କର, ମୁଁ ଆଉ ଏ ଘରେ ରହିବ ନାହିଁ ।

ଜଗଦମ୍ବା – ତୁମେ କାହିଁକି ରହିବ ନାହିଁ ? ତୁମର ପୁଅ ଅଛି, ବନ୍ଧୁ ଅଛି । ମୋତେ ବାହାର କରି ଦେଲେ ତ ନଷ୍ଟ ଯିବ – ସେହି ଚିଅଟିକ ପାଇଁ ସିନା – (କାନ୍ଦିବା)

ଗୋବିନ୍ଦ – ଜନ୍ମଅଁବୌ ! ପ୍ରକୃତରେ ତୁମେ କିଛି ବୁଝିପାରୁ ନାହିଁ, ଗୋବର୍ଦ୍ଧନକୁ ଯେ ବାହାର କରିଦେଲି ତା' କଣ ମନଃକଷ୍ଟରେ ? – ମୋ'ର କଣ କଷ୍ଟ ହେଉନାହିଁ ? – କଣ କରିବି ? ନିଜର କର୍ତ୍ତବ୍ୟ ବିବେଚନାରେ ଅନେକ ସମୟରେ ଏହିପରି କାମ କରିବାକୁ ହୁଏ । – ଆଜି ଅଜୁ ଯଦି ଏପରି କରିଥାନ୍ତା, ତାକୁ ମୁଁ ଖାଲି ବାହାର କରି ଦେଇ ନଥାନ୍ତି, ସଙ୍ଗେ ସଙ୍ଗେ ଉଚିତ ଦଣ୍ଡ ମଧ୍ୟ ଦେଇଥାନ୍ତି । ଦେଖ, ରଜାଙ୍କ ସୁ-ନଜରରେ ପଡ଼ିବ ବୋଲି, ତା'କୁ ମୁଁ ରଜାଙ୍କ ପାଖୁଆ ଲୋକ କରିଦେଲି – ଶେଷକୁ ତାଙ୍କର ମୁଣ୍ଡ ଖାଇଲା ! – ଏ' କି କମ ଅପରାଧ ? ଗୁରୁ, ଯେ ଯେପରି କରିବ ସେ ସେପରି ଫଳ ପାଇବ – ମୋର ଯା' କର୍ତ୍ତବ୍ୟ ମୁଁ କରି ଯାଉଛି । – ଆସ, ଘରକୁ ଆସିଲ, ରାତି ହୋଇ ଗଲାଣି । – ଆଜି ଅର୍ଜ୍ଜୁନ ଟା ଘରେ ନାହିଁ ବୋଲି କେମିତି ଅଲଗା ଅଲଗା ଲାଗୁଛି ।          (ଚାଲିଗଲେ)

ଜଗଦମ୍ବା – ଗୋବର୍ଦ୍ଧନ ରେ ! ତୋ'ର ପାଇଁ ଖାଲି ଜୀବ କାମୁଡ଼ି ରହୁଛି ! ଅଜୁପାଇଁ ଘର ଅଲଗା ଅଲଗା ଲାଗୁଛି – ଗୋବର୍ଦ୍ଧନ ପାଇଁ ନୁହେଁ ? ମନ ହେଉଛି ଘରେ ନିଆଁ ଲଗାଇ ଦିଅନ୍ତି ।          ( ପ୍ରସ୍ଥାନ କଲେ )

– ୦ –

## ଚତୁର୍ଥ ଦୃଶ୍ୟ !

( ପୁଷ୍କରଣୀ ତୀର )

[ ରଙ୍ଗିଲା କଳସୀଟିକୁ ପୁଷ୍କରଣୀ ତଟରେ
ରଖିଦେଇ ସୂର୍ଯ୍ୟାସ୍ତ ଦେଖି ଦେଖି ଗାଉଥିଲା ]

—ଗୀତ—

କରମେ ଯା' ଲିଖନ, କେ କରିବ ଆନ ?
ନିୟତିର ଅଧୀନ ଏ' ଭୁବନ ଜୀବନ ।
ଏହି ଯେ ସୂରୁଯ ଦେଖିନ୍ତୁ ଗଗନେ
ଆମୋଦେ ଉଲ୍ଲାସେ ସରୋଜିନୀ ସନେ
ନିୟତିର ଟାଣେ, କଦାଚର ଘନେ
ଡୁବିବ ଡୁବାଇ ପ୍ରେୟସୀ ପରାଣ ॥

କ୍ରାହିଁ ଲିଭିଗଲା, ଦେବ ! ସରୋଜିନୀ ଯେ ଧୀରେ ଧୀରେ ମଉଳି ଯାଉଛି । ହାୟ !
ବିରହ-ଯନ୍ତ୍ରଣା ଯେ କି ଯନ୍ତ୍ରଣା ତା' ଦିନକ ବିରହରେ ଆଜି ମୁଁ ବେଶ୍ ବୁଝି ପାରୁଛି—ଏ'
ତ ଦିନେ ନୁହେଁ, ମାସେ, ବର୍ଷେ, ଯୁଗେ ।

[ କଳ୍ପିଦେବ ପଶିଆସି ]

କଳ୍ପିଦ — ସତେ ରଙ୍ଗିଲା ! ମାସେ — ବର୍ଷେ—ଯୁଗେ—

ରଙ୍ଗିଲା—( ସଶବ୍ୟସ୍ତେ ଓଢଣୀଟାଣି ଗମନୋଦ୍ୟତା ହେବା )

କଳ୍ପିଦ — ( ସମ୍ମୁଖରେ ଛିଡ଼ାହୋଇ ) ରଙ୍ଗିଲା !

[ ଦୁଇତିନିଥର ଏହିପରି 'ରଙ୍ଗିଲା'
'ରଙ୍ଗିଲା' ସମ୍ବୋଧନ କରିବା]

ରଙ୍ଗିଲା — ବାଟ ଛାଡ଼ି ଦିଅନ୍ତୁ, ମହାରାଜ !

କଳ୍ପିଦ — ଏହିକି ତୁମ୍ଭର ସେହି ପୂର୍ବ-ପ୍ରେମ — ପୂର୍ବ ସନ୍ଧ୍ୟା, ରଙ୍ଗିଲା !

ରଙ୍ଗିଲା — ଅବଳାକୁ ବାଟ ଛାଡ଼ି ଦିଅନ୍ତୁ, ମହାରାଜ !

କଳ୍ପିଦ — ଏହି କେତେଦିନ ମଧ୍ୟରେ ସବୁ କଣ ଭୁଲିଗଲ, ରଙ୍ଗିଲା !

ରଙ୍ଗିଲା — ( ନୀରବ )

କଳ୍ପିଦ — ରଙ୍ଗିଲା ! ରଙ୍ଗିଲା ! ମନେ କି ପଡ଼ୁନା ସେ ଉତ୍ସବ ଦିନର କଥା ? ଏକାକିନୀ
ଆମ୍ଭର ଉଦ୍ୟାନରେ ଭ୍ରମଣ କରୁ କରୁ ହଠାତ୍ ମୋତେ ଦେଖି ଯେତେବେଳେ

'ମହାରାଜ' ବୋଲି ସମ୍ବୋଧନ କରି ଉଠିଲ, ସେତେବେଳେ ମୁଁ କଣ କହିଥିଲି — ହସି ହସି କି ଉତ୍ତର ଦେଇଥିଲି ? — 'ମହାରାଜ ଯେ ରଙ୍ଗିଲି ନିକଟରେ ସେହି ବନ୍ଧୁ — ଚିରଦିନ ମଧ୍ୟ ସେହି ବନ୍ଧୁ ରହିବ' — ତୁମ୍ଭେ ତାହା ଶୁଣି କି ଭାବ ପ୍ରକାଶ କରିଥିଲ — କି ଆନନ୍ଦ ଅନୁଭବ କରିଥିଲ ?

ରଙ୍ଗିଲି — ( ଦୀର୍ଘନିଃଶ୍ୱାସ ତ୍ୟାଗ କରିବା )

କଳ୍ପସ୍ତ — ଭୁଲି କି ଗଲ ପୁଣି, ତୁମ୍ଭେ ଯେତେବେଳେ ଭୟ କଲ — ରାଜ୍ୟ ଶାସନ ଭାର ନିଜ ହସ୍ତରେ ଗ୍ରହଣ କଲି ବୋଲି — ରାଜ୍ୟ ମୋହରେ ମୁଗ୍ଧ ହୋଇ ତୁମ୍ଭଙ୍କୁ ଯଦି ଭୁଲିଯାଏଁ, ସେତେବେଳେ ତୁମ୍ଭର ଅଶାପନା ପାଇଁ ତୁମ୍ଭର ବିଶ୍ୱାସ ପାଇଁ କଣ କରିଥିଲ ? କପଟତା ତ୍ୟାଗ କରି, ହୃଦୟର ଯାହା କିଛି ଗୁପ୍ତ କଥା ସମସ୍ତ ପ୍ରକାଶ କରିଥିଲ । — ତୁମ୍ଭେ ଶୁଣି କହିଥିଲ; ଏତେ ଅନୁଗ୍ରହ ଏ' ଦାସୀ ପ୍ରତି ! ଈଶ୍ୱର କି ମତେ ଏ ଅନୁଗ୍ରହ କରିବେ ?

ରଙ୍ଗିଲି — ( ଘନ ଘନ ଦୀର୍ଘ-ନିଃଶ୍ୱାସ ତ୍ୟାଗ କଲେ )

କଳ୍ପସ୍ତ — ଆହୁରି ଅତୀତର କଥା କି ଥରେ ମନେ ପଡ଼ୁ ନାହିଁ, ରଙ୍ଗିଲି ! ସେହି ଏକା ସଙ୍ଗେ ପାଠ ପଢ଼ିବା — ଏକା ସଙ୍ଗେ ଖେଳ ଖେଳିବା — ଏକା ସଙ୍ଗେ ଫୁଲ ତୋଳି ହାର ଗୁନ୍ଥି ପରସ୍ପରକୁ ପିନ୍ଧାଇ ଦେବା ? ରଙ୍ଗିଲି ! ରଙ୍ଗିଲି !

ରଙ୍ଗିଲି — ବନ୍ଧୁ ! ବନ୍ଧୁ !

[ ଓଢ଼ଣା କାଢ଼ି ଦେଇ, ସହସା ବାକ୍‌ରୁଦ୍ଧ ହେବା ]

କଳ୍ପସ୍ତ — ଡାକ, ଡାକ ରଙ୍ଗିଲି ! ଅନେକ ଦିନ ପରେ ସେହି ମଧୁର ଡାକ ପୁଣି ଶୁଣୁଛି ।

ରଙ୍ଗିଲି — (ଓଢ଼ଣା ଟାଣି) ମହାରାଜ ! ଅବଳାକୁ ପଥ ଛାଡ଼ିଦିଅନ୍ତୁ — ଦୁର୍ବଳାକୁ ରକ୍ଷା କରନ୍ତୁ ।

କଳ୍ପସ୍ତ — ଏ କଣ ରଙ୍ଗିଲି ? ପୁଣି କାହିଁକି ମଧୁ ପରିବର୍ତ୍ତେ ତିକ୍ତ ରସ ଢାଳିଦେଲ — ଜ୍ୟୋତ୍ସ୍ନା ପରିବର୍ତ୍ତେ ଅମାନିଶାର ଅନ୍ଧକାର ପ୍ରକାଶ କଲ ?

ରଙ୍ଗିଲି — (ଓଢ଼ଣା ଟାଣି) ମହାରାଜ ! ପର ନାରୀ ସଙ୍ଗେ ଏପରି ବ୍ୟବହାର କି ଯାଜେ ?

କଳ୍ପସ୍ତ — ପରନାରୀ — ରଙ୍ଗିଲି ମୋର ପରନାରୀ ! ନା, ରଙ୍ଗିଲି ! ସେପରି କୁହ ନା —

ରଙ୍ଗିଲି — ମହାରାଜ ! ବିଦ୍ୱାନ ଆପଣ — ଧାର୍ମିକ ଆପଣ —

କଳ୍ପସ୍ତ — ଦିନେ ତାହା ଥିଲି ସତ୍ୟ. ମାତ୍ର ଆଜି ଆଉ ନାହିଁ । — ଆଜି କେବଳ ରଙ୍ଗିଲିର ପ୍ରେମାକାଙ୍କ୍ଷୀ — ରଙ୍ଗିଲିର ପ୍ରେମପ୍ରାର୍ଥୀ —

ରଙ୍ଗିଲି — କାହିଁକି, ମହାରାଜ ! ରାଜାଙ୍କୁ ପ୍ରଜାର ଯେପରି ପ୍ରେମ ଦେବା ଉଚିତ — ବନ୍ଧୁକୁ ବନ୍ଧୁର ଯେପରି ପ୍ରେମଦେବା ଉଚିତ, ତା'ତ ଏ ଦୀନା ପୂର୍ଣ୍ଣମାତ୍ରାରେ ଅର୍ପଣ କରୁଛି ?

କଳ୍ପସ୍ତ — ସ୍ୱାମୀକୁ ସ୍ତ୍ରୀର ଯେପରି ପ୍ରେମ ଦେବା ଉଚିତ, ତାହା କାହିଁ ଦେଇଛ ରଙ୍ଗିଲି ?

ରଙ୍ଗିଲି — ( ଈଷତ୍ କ୍ରୋଧ ପ୍ରକାଶ କରିବା ) ମହାରାଜ !

କଳ୍ପସ୍ତ — ବୁଝିପାରୁଛୁ, ରଙ୍ଗିଲି ! ଧର୍ମ-ଦୃଷ୍ଟିରେ ଏପରି କଥା ଅନୁଚିତ ହୋଇଛୁ, କିନ୍ତୁ ପୂର୍ବ-ବନ୍ଧୁତ୍ୱ ଦୃଷ୍ଟିରେ ଏହା କଦାପି ଅନ୍ୟାୟ ନୁହେଁ ।

ରଙ୍ଗିଲି — ଘୋରତର ଅନ୍ୟାୟ, ମହାରାଜ ! ପର-ନାରୀ ହୋଇ ଅପର-ମୁଖ ଦର୍ଶନ କରିବା ମଧ୍ୟ ପାପ ! ତଥାପି ସେ ପାପ ଯେ ଅଧୁନା ବରଣ କରିଛୁ — ନାରୀଜନୋଚିତ-ଲଜ୍ଜା ଯେ ତ୍ୟାଗ କରିଛୁ, ତାହା କେବଳ ପୂର୍ବ-ପ୍ରେମ ଓ ବନ୍ଧୁତ୍ୱ-ଆକର୍ଷଣରେ— ସହୋଦରୋପମ ଭ୍ରାତୃ ଜ୍ଞାନରେ ।

କଳ୍ପସ୍ତ—ଏତେ କଥା-ଟୁରୁଣୀ ଆଉ ଭଲ ଲାଗୁନାହିଁ, ରଙ୍ଗିଲି !—ଶୁଣ, ରଙ୍ଗିଲି ! ତୁମ୍ଭପାଇଁ ମୁଁ ରାଜ୍ୟ, ସ୍ନେହ, ଭକ୍ତି, ଧର୍ମ ସମସ୍ତ ତ୍ୟାଗ କରିଛୁ—ଏହି ହୃଦୟାସନ ଅଦ୍ୟାପି ଶୂନ୍ୟ କରି ରଖିଛୁ -ଆସ, ଅଧିଷ୍ଠାତ୍ରୀ ଦେବୀ ହୋଇ ସାନନ୍ଦେ ତହିଁରେ ଉପବେଶନ କର — ତୁମ୍ଭର କିଙ୍କରର ଆଜୀବନ ସେବା-ପୂଜା ଗ୍ରହଣ କର !

ରଙ୍ଗିଲି — (ନୀରବ)

କଳ୍ପସ୍ତ — କିଛି ଭୟ କରନା, ରଙ୍ଗିଲି ! ପ୍ରେମିକ-ପ୍ରେମିକାର ବାସ, ପ୍ରେମ ରାଜ୍ୟରେ — ପ୍ରେମିକ-ପ୍ରେମିକାର ଖାଦ୍ୟ, ପ୍ରେମ-ମଧୁ । — ଏ ପାର୍ଥିବ ଅଭାବ, ପାର୍ଥିବ କଳଙ୍କ ସେମାନଙ୍କୁ ସ୍ପର୍ଶ କରିପାରିବ ନାହିଁ, କି କୌଣସି କ୍ଲେଶ ଦେଇପାରିବ ନାହିଁ !

ରଙ୍ଗିଲି — (ନୀରବ)

କଳ୍ପସ୍ତ — ଆସ, ରଙ୍ଗିଲି — (ହସ୍ତ ଧାରଣ କରିବାକୁ ଉଦ୍ୟତ ହେଲେ)

ରଙ୍ଗିଲି — (ଦୂରକୁ ଘୁଞ୍ଚି ଯାଇ) ଏହି କି ଉତ୍କଳେଶ୍ୱର କଳ୍ପସ୍ତଦେବ ? —

କଳ୍ପସ୍ତ — ଉତ୍କଳେଶ୍ୱର କଳ୍ପସ୍ତଦେବ କେବେଠୁ ମୃତ, ରଙ୍ଗିଲି । — ବର୍ତ୍ତମାନ ଯାହାକୁ ଦେଖୁଛ, ସେ ରଙ୍ଗିଲେଶ୍ୱର କଳ୍ପସ୍ତଦେବ । ଆସ, ରଙ୍ଗିଲି — ଆସ ପ୍ରିୟେ !

[ହସ୍ତଧାରଣ କରିବାକୁ ପୁନରୁଦ୍ୟତ]

ରଙ୍ଗିଲି — ଭଗବାନ୍ ! ଭଗବାନ୍ ! ରକ୍ଷାକର —

କଳ୍ପସ୍ତ — ହାଃ-ହାଃ-ହାଃ — ଭଗବାନ୍‌ର ମଧ୍ୟ ଆଉ ସାଧ୍ୟ ନାହିଁ, ରଙ୍ଗିଲି ! ରଙ୍ଗିଲିକୁ ମୋର ଆଜି କେହି କାଢ଼ିନେଇପାରିବ ନାହିଁ — ପ୍ରେମିକ-ପ୍ରେମିକାକୁ ଆଉ କେହି ବିଚ୍ଛିନ୍ନ କରିପାରିବ ନାହିଁ । ଆସ ପ୍ରିୟେ ! (ହସ୍ତ ଧାରଣ କରିବାକୁ ଗିବା)

ରଙ୍ଗିଲି — କାହିଁ ଅଛ, ନାଥ । — ମହାରାଜ ! ମହାରାଜ !

(ପତନ ଓ ମୂର୍ଚ୍ଛା ଯିବା)

[ଜଗଦମ୍ବା ବେଗେ ପ୍ରବେଶ କଲେ]

ଜଗଦମ୍ବା — ଏହି ଶୁଣ, 'ମହାରାଜ, ମହାରାଜ' ଡାକ — ଏହି ଦେଖ ପୁଣି —

[ କଲ୍ୟୁସ୍ଥ ଦେବ ବେଗେ ପ୍ରସ୍ଥାନ କଲେ
ଓ ଗୋବିନ୍ଦ ବିଦ୍ୟାଧର ପ୍ରବେଶ କରି ]

ଗୋବିନ୍ଦ—ସତେ, ସତେ—କାହିଁ, କାହିଁ କନିଆଟବୀ ?

ଜଗଦମ୍ବା—ଯାଃ—ମହାରାଜ ତ ପଳେଇଗଲେ !

ଗୋବିନ୍ଦ—କିଏ ? କଲ୍ୟୁସ୍ଥ ଦେବ ? ନା—ନା—

ଜଗଦମ୍ବା—ନା—ନା ତ ଆଉ କିଏ ଗୋବର୍ଦ୍ଧନ ? —ଦେଖ, ଏଣେ ତୁମ୍ଭର ସତୀ ବୋହୂ କପଟ ଆମକୁ ଦେଖି ସତୀ ହୋଇ ଶୋଇପଡ଼ିଛନ୍ତି ! —ଆମ୍ଭେ ଭାଇ ଭଉଣୀ ପରା ସବୁଥିରେ ଦୋଷୀ ?—ଦେଖ, ଦେଖ ଏଥର ନିଜ ଆଖିରେ ଦେଖ—

ଗୋବିନ୍ଦ—ଏ' କଣ ସତ, କନିଆବୌ ?

ଜଗଦମ୍ବା—ଆଉ କଣ ମିଛ ?

[ଗୋବିନ୍ଦ ବ୍ୟଥିତ ହୃଦସ୍ଥରେ ଜଗଦମ୍ବାର
ସ୍କନ୍ଧଦେଶରେ ମସ୍ତକ ସ୍ଥାପନକଲେ ଓ
ଜଗଦମ୍ବା ଗର୍ବିତ ଭାବେ ଆନନ୍ଦପୂର୍ଣ୍ଣ
ଦୃଷ୍ଟିରେ ହମ୍ବୁଟଙ୍କୁ ଚାହିଁ ରହିଲେ]

—o—

## ପ୍ରଥମ ଦୃଶ୍ୟ :—

( କକ୍ଷ )

[ଗୋବର୍ଦ୍ଧନ ବିଦ୍ୟାଧର ଓ ଜଗଦମ୍ବା
. କହୁ କହୁ ପ୍ରବେଶ କଲେ]

ଗୋବର୍ଦ୍ଧନ—କହନିଆ ବୌ ! ବୋହୂକୁ ଏତେ ଗାଳିଦେଲ—ଏତେ ଭୟ ଦେଖାଇଲ—ତଥାପି ସେ ତାର ଦୋଷ ସ୍ୱୀକାର କରୁନାହିଁ ? ତାର ଏକା କଥା, ଯଦି ନା 'କନ୍ୟାକୁ ଯେବେ ବିଶ୍ୱାସ କରନ୍ତି, ତେବେ ନିଶ୍ଚୟ ଜାଣନ୍ତୁ, ସେ କାୟ-ମନଃ-ବାକ୍ୟରେ କଦାପି ଅସତୀ ନୁହେଁ ।'

ଜଗଦମ୍ବା—ସତିଆପଣ ଦେଖେଇ ହେଉଛୁ ! ଯେବେ ସତୀ, ତେବେ ସବୁ କଥା ଖୋଲି କହୁନାହିଁ ? ଖାଲି ଆଖିପତାରେ ପାଣିଟିକ ଲୁଚାଇ ରଖିଛୁ କାହିଁକି ? ·ଦେଖ, ତୁମେ ସେ ଲୁହ ଧାରରେ ଆଉ ଭନ୍ତି ଯାଅନାହିଁ ।

ଗୋବର୍ଦ୍ଧନ—ମୁଁ ଅକାରଣେ ଗାଳି ମନ୍ଦ କରି ନାହିଁ ତ ?

ଜଗଦମ୍ବା—ତେବେ କଣ ମୁଁ ମିଛେଇ ? —ମୋତେ ବଦନାମ କରିଦେଉନାହିଁ ? ତୁମେ ଆଖିରେ ଯା ଦେଖିଲ, ତା କଣ ମିଛ ? ଆଖିକୁ ଓପାଡ଼ି ପକାଉ ନାହ ?

ଗୋବର୍ଦ୍ଧନ—ରାଜା କୁ-ଅଭିପ୍ରାୟରେ ଆସିଥାଇ ପାରନ୍ତି—ଏହାବୋଲି, ବୋହୂ ଯେ ଖରାପ ଉଦ୍ଦେଶ୍ୟରେ ସେଠାକୁ ଯାଇଥିଲା, ତାର ପ୍ରମାଣ କଣ ? ଯଦି ବା ଯାଇଥିଲା ତେବେ ମୂର୍ଚ୍ଛା ଗଲା କାହିଁକି ?

ଜଗଦମ୍ବା—ଏହି ସବୁ ତୁମ୍ଭର ମନ୍ତ୍ରୀ-ବୁଦ୍ଧି । ଏତକ ବୁଝି ପାରୁ ନାହଁ—ଚୋର କିଡି ଚୋରି କରୁଥାଏ ; ଯେତେବେଳେ ଧରା ପଡ଼ିଯାଏ, ସେତେବେଳେ ସେ ସାହସ କରି ଦୌଡ଼ି ପଳାଏ—ନାହିଁ ତ ସେ ବାଟ ବନ୍ଦ ଥିଲେ, ଭୟରେ ମୂର୍ଚ୍ଛା ଯାଏ—ପୁଣି ପିଲାଦିନୁ ଯେ ରାଜାଙ୍କୁ ଦଣ୍ଡେ ନ ଦେଖିଲେ ରହିପାରୁ ନ ଥିଲା, ସେ ଖରାପ ଛଡ଼ା କଣ ଭଲ ଉଦ୍ଦେଶ୍ୟରେ କେବେ ସେଠାକୁ ଯାଇପାରେ ? କି, ଏହା କଣ ମନକୁ ଆସୁନାହିଁ ?

ଗୋବର୍ଦ୍ଧନ—(ହସି) କହନିଆ ବୌ ! ତୁମର ଯେପରି ପ୍ରଖର ବୁଦ୍ଧି, ତୁମେ ପୁରୁଷ ହୋଇଥିଲେ, ନିଶ୍ଚୟ ଜଣେ ସର୍ବୋତ୍କୃଷ୍ଟ ମନ୍ତ୍ରୀ ହୋଇପାରିଥାନ୍ତ ।

ଜଗଦମ୍ବା—ମନ୍ତ୍ରୀ ହୋଇ ପାରିଥାନ୍ତି—ନା—ମନ୍ତ୍ରୀ ରଖି ପାରିଥାନ୍ତି ?

ଗୋବର୍ଦ୍ଧନ—(ସହାସ୍ୟେ) ବାସ୍ତବିକ, ତୁମେ ରାଜା ହୋଇ ପାରିଥାନ୍ତ ।

ଜଗଦମ୍ବା—ରାଣୀ କଣ ଏବେ ହୋଇପାରେ ନାହିଁ ?

ଗୋବିନ୍ଦ—(ସହାସ୍ୟେ) ତେବେ କଣ ଇନ୍ଦୁ ମଧ୍ୟରେ କୌଣସି ରାଜା ସଙ୍ଗେ କଥାବାର୍ତ୍ତା ଠିକ୍ କରିସାରିଲେଣି ନା କଣ ?

ଜଗଦମ୍ବା—କଥାବାର୍ତ୍ତା ତ ତେରଦିନୁଁ ଠିକ୍ କରି ଆକାଶକୁ ଅନାଇ ବସିଛୁ, ପ୍ରଭୋ !

ଗୋବିନ୍ଦ—ବୁଝିପାରିଲି ନାହିଁ ତୁମ୍ଭର କଥା, କନିଆ ବୌ !

ଜଗଦମ୍ବା—କାହିଁକି, ପ୍ରଭୋ ! ନ୍ୟାୟ, ଧର୍ମ, କ୍ଷମତା—ତିନିଆଡ଼େ ବିଚାର କରି ଦେଖନ୍ତୁ, ମୋର କଥା ଯଥାର୍ଥ କି ନୁହେଁ ?

ଗୋବିନ୍ଦ (ସବିସ୍ମୟେ) ଆଜି ଏ' କଣ କହୁଛ, କନିଆ ବୌ ?

ଜଗଦମ୍ବା ଯାହା ଉଚିତ, ତାହା ହିଁ କହୁଛି । ପ୍ରଭୋ ! ଭୁଲି କି ଗଲ ସେ ଦିନ, ଯେଉଁ ଦିନ—ବୟୋଜ୍ୟେଷ୍ଠ, ଧର୍ମ୍ମିଷ୍ଠଶ୍ରେଷ୍ଠ ପ୍ରତାପରୁଦ୍ରଦେବଙ୍କ ମନ୍ତ୍ରୀ ତୁମ୍ଭେ—କେତେ ସମ୍ମାନ—କେତେ ଗୌରବର ଅଧିକାରୀ ହୋଇ ସୁଦ୍ଧା, ବିନା ଦୋଷରେ ସାମାନ୍ୟ ଜଣେ ମଦ୍ୟପ, ଲମ୍ପଟ କର୍ତ୍ତୃକ ଅପମାନିତ ହେଲ—ଗଳାଧକ୍କା ଖାଇବାର ଉପଯୁକ୍ତ ବିବେଚିତ ହେଲ । ସେହି ମୂର୍ଖ—ନରାଧମ ଆଜି ପର୍ଯ୍ୟନ୍ତ ଉତ୍କଳର ପବିତ୍ର-ସିଂହାସନରେ ନିର୍ଲଜ୍ଜ ଭାବରେ ଉପବେଶନ କରୁଛି, ଆଉ ତୁମ୍ଭେ ନ୍ୟାୟବାନ୍, ଧାର୍ମିକ, କ୍ଷମତାପନ୍ନ ହୋଇ ସୁଦ୍ଧା ଅଦ୍ୟାପି ତା'ର ମନ୍ତ୍ରୀ ହୋଇ ରହିଛ ? —ଅଦ୍ୟାପି ତା'ର ପଦଲେହନ କରୁଛ ?— ମୁଁ ତୁମ୍ଭର ସ୍ତ୍ରୀ, ତୁମ୍ଭେ ମୋର ଏକମାତ୍ର ସୁଖ, ତଥାପି ତୁମ୍ଭଙ୍କୁ ତ୍ୟାଗ କରିବାକୁ ମୋ'ର ମନ ବଳୁଛି ।

ଗୋବିନ୍ଦ - ଧୈର୍ଯ୍ୟ ଧର, ଧୈର୍ଯ୍ୟଧର କନିଆ ବୌ !

ଗୋବିନ୍ଦ ଧୈର୍ଯ୍ୟ ଧରିବି, ମନେକର ଥରେ କି ଘଟଣା ପୁଣି କାଲି ଘଟିଗଲା—କାହା-ହେତୁ ଗୋଟିଏ ଅବଳା ବାଳିକାର ଆଜି ସର୍ବନାଶ ହୋଇଗଲା—କାହାହେତୁ ତୁମ୍ଭର ସୁପ୍ରତିଷ୍ଠିତ ବଂଶ-ଗୌରବ ଆଜି ସମୂଳେ ବିନଷ୍ଟ ହୋଇଗଲା ?—ଯାହାହେତୁ ଏହି ଦୁର୍ଦ୍ଦଶା, ସେହି ନରାଧମ, ଲମ୍ପଟ ବର୍ତ୍ତମାନ ସୁଦ୍ଧା ନିର୍ଲଜ୍ଜ ଭାବେ ପ୍ରମୋଦ ଭବନରେ ଆନନ୍ଦ ଉପଭୋଗ କରୁଛି, ଆଉ ତୁମ୍ଭେ ନ୍ୟାୟବାନ୍, ଧାର୍ମିକ, କ୍ଷମତାପନ୍ନ ହୋଇ ସୁଦ୍ଧା ତାହା ଅକ୍ଳେଶରେ ସହ୍ୟ କରୁଛ !—ମୁଁ ନାରୀ—ସ୍ୱଭାବତଃ କୋମଳହୃଦୟା—ମୋ' ହୃଦୟରେ ମଧ୍ୟ ପ୍ରତିହିଂସା-ବହ୍ନି ଦାଉ ଦାଉ କରି ଜଳି ଉଠୁଛି ।

ଗୋବିନ୍ଦ—(ଭାବି) ସ୍ଥିରହୁଅ, କନିଆ ବୌ ! ମୁଁ ଠିକ୍ କଲି, ଅଜୁ ଫେରି ଆସିଲେ ଏ' ସ୍ଥାନ ତ୍ୟାଗ କରି ଚାଲିଯିବା !

ଜଗଦମ୍ବା—ଏହି କି ତେବେ ତୁମ୍ଭର ନ୍ୟାୟ, ଧର୍ମ ଓ କ୍ଷମତା ?

ଗୋବିନ୍ଦ—କଣ କରିବି, କନିଆ ବୌ—ମହାରାଜା କି ପିତୃ ସମାନ ନୁହନ୍ତି ? ମହାରାଣୀ କି ମାତୃ ସମାନ ନୁହନ୍ତି ? ବିଶେଷତଃ ମୋର ଆଶୈଶବ ପାଳନକର୍ତ୍ତ୍ରୀ ମୋର

ଅନ୍ନଦାତା ସେହି ଦେବୋପମ ପ୍ରତାପରୁଦ୍ରଦେବଙ୍କ ମୃତ୍ୟୁ ଯେତେବେଳେ ମନେପଡ଼େ, ମୋର ହୃଦୟ ଏକ ଅପୂର୍ବ କୃତଜ୍ଞତାରେ ପୂର୍ଣ୍ଣ ହୋଇଉଠେ—ମୁଁ ସମସ୍ତ ପାଶୋର ଯାଏଁ, ଜନନୀ ବୌ ! ସମସ୍ତ ପାଶୋର ଯାଏଁ । ଅମର କର୍ମଫଳ ଅମକୁ ଭୋଗ କରିବାକୁ ଦିଅ ।

[ ରଙ୍ଗିଲ ଉନ୍ମାଦନୀ ଭାବେ ପ୍ରବେଶ କଲା ]

ରଙ୍ଗିଲ—ବାବା ! ବାବା ! ଏ କଥା କଣ ସତ ?—ଦେଖ ଏ ପତ୍ର । ମୋର ଆଖିର ଦୋଷ ନୁହେଁ ତ ? ମୋର ବୁଦ୍ଧିର ଭ୍ରମ ନୁହେଁ ତ ?

ଜଗଦମ୍ବା—କି ପତ୍ର ଦୋହ୍ନୁ ?

ଗୋବିନ୍ଦ—କି ପତ୍ର ? —କାହିଁ ? ଦେଖେ—(ପତ୍ର ପାଠ କରୁ କରୁ କ୍ରମେ କ୍ରମେ ବ୍ୟାକୁଳିତ ହୋଇ ଉଠି) "ସ୍ୱାମୀଣ ଷଡ଼ଯନ୍ତ୍ର—ମୋର ଆଶାତ୍ୟାଗ କରିବ"—କା'ର ? "ତୁମ୍ଭର ଅଜୁ ।"—ଅଜୁ ଲେଖିଛି, ଅଜୁର ଆଶା ତ୍ୟାଗ କରିବ !—ଏ କଣ, ମୁଁ ଯେ କିଛି ବୁଝିପାରୁ ନାହିଁ ?—

ଜଗଦମ୍ବା—ବୁଝିବାକୁ କଣ ଆଉ ବାକି ଅଛି ପ୍ରଭୋ ?

ରଙ୍ଗିଲ—ତେବେ କ'ଣ ସେ ନାହାନ୍ତି ?—ଏ' କଥା ସତ ? ( ମୂର୍ଚ୍ଛିତା ହୋଇପଡ଼ିଲା)

ଗୋବିନ୍ଦ—ଜନନୀ ବୌ ! ଜନନୀ ବୌ ! ସତେ କି ଅଜୁର ଆଶା ତ୍ୟାଗ କରିବ ?

(ହତାଶ ଭାବରେ ବସିପଡ଼ିଲେ)

ଜଗଦମ୍ବା—ପ୍ରଭୋ ! ପ୍ରଭୋ ! ଏ'କଣ ମୂର୍ଚ୍ଛାଯିବାର ସମୟ ?—ଏ' କଣ ହତାଶ ହେବାର ବେଳ ? ହତ ଶାବା ବ୍ୟାଘ୍ରୀ କି ମନଦୁଃଖରେ କେବେ ମୂର୍ଚ୍ଛାଯାଏ ? ଲଙ୍ଗୁଳାହତ ଫଣୀ କି ହତାଶ ହୋଇ କେବେ ଶୋଇପଡ଼େ ?—ଉଠ—ଜାଗ—ପ୍ରତିଶୋଧ ନିଅ । —ତୁମ୍ଭର ବକ୍ଷସ୍ଥଳରେ ସେ ଦୋଘାତ କରିଛି, ତୁମ୍ଭେ ତା'ର ହୃତ୍‌ପିଣ୍ଡ ଛିଣ୍ଡାଇ ଘେନି ଆସ—ତୁମ୍ଭର ପ୍ରାଣର ଧନ ଯେ ଲୁଣ୍ଠନ କରିଛି, ତୁମ୍ଭେ ତାର ସର୍ବସ୍ୱ ଲୁଣ୍ଠନ କରି ନାରଖାର କରିଦିଅ !—ତେବେ ଯଦି ଜ୍ୱଳନ୍ତବହ୍ନିର ତାପ କିଞ୍ଚିତ ଉପଶମ ହୋଇପାରେ—ଜୀବନବ୍ୟାପୀ ଜ୍ୱାଳାର କିଞ୍ଚିତ ଅବସାନ ହୋଇପାରେ !

ଗୋବିନ୍ଦ—କଣ କହୁଛ, ଜନନୀ ବୌ ! ମୁଁ ଯେ କିଛି ଭାବି ପାରୁନାହିଁ !

ଜଗଦମ୍ବା—ଭାବିବାକୁ ଯେ କିଛି ବାକି ନାହିଁ, ପ୍ରଭୋ ! କେବଳ ଅବସାଦ ପରିତ୍ୟାଗ କର —ସଙ୍କୁଚିତ ପକ୍ଷ ବିସ୍ତାର କର—ଶୀକାର ଅତି ନିକଟରେ ଅଛି—ପ୍ରତିହିଂସା ସାଧନର ସୁନ୍ଦର ସୁଯୋଗ ଉପସ୍ଥିତ; ଆଉ ହେଳା କରନାହିଁ ! ଉଠ—(ଉଠାଇବା) ଲମ୍ଫ ଦିଅ ! ମୁଁ ତୁମ୍ଭଙ୍କୁ ପଦେ ପଦେ ସାହାଯ୍ୟ କରୁଛି ।

ଗୋବିନ୍ଦ – ଜନନୀ ବୌ ! ଜନନୀ ବୌ ! ମିଛ କଥା—ଅଜୁ ମୋର ଅଛି—ଏ ଜନ୍ମଟସ୍ତ ଜାଲ-ପଣ – ମୁଁ ଠିକ୍ ବୁଝି ଆସୁଛି— (ବେଗେ ପ୍ରସ୍ଥାନ କଲେ)

ଜଗଦମ୍ବା—(ସ୍ୱଗତଃ) ଆଜି ଠିକ୍ ଚକ୍ରାନ୍ତ ବୁଝିବ । (ପ୍ରକାଶ୍ୟେ) ଉଠି ଆସ, ବୌ— ହତାଶ ହେଲେ କି ଖାଲି ଚଳିବ ? ପ୍ରତିଶୋଧର ଚିନ୍ତା କର ।

ରଙ୍ଗିଲ—(ଉଠିଲ ଆଉ କି ପ୍ରତିଶୋଧ ଗୃହିଁ, ମା ?—ମା'ର ମନସ୍କାମନା ତ ପୂର୍ଣ୍ଣ ହୋଇଛି ।

ଜଗଦମ୍ବା – ବୋହୂ !

ରଙ୍ଗିଲ – ହାଃ-ହାଃ-ହାଃ—ମା'ର ମନସ୍କାମନା ପୂର୍ଣ୍ଣ ହୋଇଛି – ମା'କୁ ସନ୍ତୁଷ୍ଟ କରିପାରିଛି । – ତୁମେ ଠିକ୍ କହିଥିଲ, ପ୍ରଭୋ ! "ଆମରି ବୁଝିବା ଭୁଲ୍ – ମା ଯେ ସନ୍ତାନ ପ୍ରତି ସର୍ବଦା ସନ୍ତୁଷ୍ଟ" – ନୁହେଁ, ମା ?

ଜଗଦମ୍ବା – ବୋହୂ ! କଣ ଏସବୁ ଉଚ୍ଚୁ ବକୁଛ ?

ରଙ୍ଗିଲ – 'ମନୁଷ୍ୟ କେବେ ମନୁଷ୍ୟକୁ ଘୃଣା କରିପାରେ ନାହିଁ – ଘାତ ପ୍ରତିଘାତ ଭିତରେ କେବେ ଅପଡ଼ ହୁଏ ନାହିଁ ! – ଠିକ୍ କଥା – ସେହି ନିଷ୍କପଟ ବନ୍ଧୁତ୍ୱର ଆଜି କି ସୁନ୍ଦର ପୁରସ୍କାର ! – ସେହି ସରଳ ବିଶ୍ୱାସର ଆଜି କି ସୁନ୍ଦର ପରିଣାମ – ହାଃ-ହାଃ-ହା –

ଜଗଦମ୍ବା – ବୋହୂ ! ତୁମର କଣ ଲଜ୍ଜା ନାହିଁ ?

ରଙ୍ଗିଲ – ଲଜ୍ଜା ! କାହୁଁ ଆସିବ ? ତୁମେ ପରା ସବୁ କାଢ଼ି ନେଇଛ ?

ଜଗଦମ୍ବା – ବୌ !

ରଙ୍ଗିଲ – ନା-ନା, ମୁଁ ଭୁଲ କହୁଛି – ଅଧେ ତୁମେ ନେଇଛ, ଅଧେ ରାଜା ନେଇଛନ୍ତି !

ଜଗଦମ୍ବା – କ'ଣ କହୁଛ, ବୋହୂ ? ଚାଲିଯାଅ ଏଠୁଁ !

ରଙ୍ଗିଲ – ଯାଉଛି ମା, ଯାଉଛି – ଚରିଦନ ପାଖେ ଯାଉଛି – ହାଃ-ହାଃ – ହା (ପ୍ରସ୍ଥାନ)

[ ଜଗଦମ୍ବା ରଙ୍ଗିଲକୁ ଅନୁଚ୍ଚେନେବେ ଚାହିଁ ରହିଲେ ]

– ,, ପ୍ରତିବେଶିନୀ ପ୍ରବେଶ କରି ]

ପ୍ରତିବେଶିନୀ – ଆହା ! କି ସୁନ୍ଦର ପିଲାଟିଏ – ରୂପରେ ଯେମିତି ଗୁଣରେ ବି ସେମିତି !

ଜଗଦମ୍ବା – ହାୟରେ – ଅଜୁରେ ! ତୁ କୁଆଡ଼େ ଗଲୁ କି ରେ ? ଅଜୁରେ –

( କାନ୍ଦିବାର ଅଭିନୟ କରିବା )

ପ୍ରତିବେଶିନୀ – କାନ୍ଦ ନା ମା' – ନ କାନ୍ଦିବ ବା କପରି ? ସଉତୁଣୀ ପୁଅ କଣ ପୁଅ ନୁହେଁ ।

ଜଗଦମ୍ବା – ହାୟରେ, ଅଜୁରେ ! ତୋତେ ଛାଡ଼ି ମୁଁ କେମିତି ବଞ୍ଚିବି, ଅଜୁନରେ ? –

[ କପଟ କାନ୍ଦିବାର ଅଭିନୟ କଲେ ଓ ପ୍ରତିବେଶିନୀ 'କାନ୍ଦନା' 'କାନ୍ଦନା' କହି ସାନ୍ତ୍ୱନା ଦେଉଥିଲେ ]

—୦—

## ଦ୍ୱିତୀୟ ଦୃଶ୍ୟ :—

( ଗଳିରାସ୍ତା )

[ ଗୋବର୍ଦ୍ଧନ ପ୍ରବେଶ କରି ]

ଗୋବର୍ଦ୍ଧନ — କାହିଁ ନାନା ? ଏତେବେଳ ଯାଏ ଆସୁନାହାଁନ୍ତି କାହିଁକି — ଉଃ କି ଅନ୍ଧାର ! ମୋର ବାହାର ଭିତର, ଗୃହଆଡ଼ ଯେପରି ଘୋଟି ରହିଛି ! — ( କାନ ଡେରି ) ଏଇ ନାନା ଆସୁଛନ୍ତି ପରା !

[ ଜଗଦମ୍ବା ପ୍ରବେଶ କଲେ ]

ଜଗଦମ୍ବା — କାହିଁ ତୁ ଗୋବରା ? ମୋତେ ଯେ କିଛି ଦିଶୁ ନାହିଁ —

ଗୋବର୍ଦ୍ଧନ — ଏହି ଯେ ମୁଁ ନାନା !

ଜଗଦମ୍ବା — ଉଃ, ଆଜି କି ଅନ୍ଧାର !

ଗୋବର୍ଦ୍ଧନ — ଏହିପରି ଅନ୍ଧାର ଦିନ-ରାତ ଆମମାନଙ୍କର ଦରକାର, ନାନା !

ଜଗଦମ୍ବା — ବୋହୂଟା ଯେପରି କିଛି କିଛି ବୁଝି ପାରିଛି, ଗୋବରା !

ଗୋବର୍ଦ୍ଧନ — କାହିଁକି ମୁଁ ତ ଅବିକଳ ଅଜୁନ ଅକ୍ଷର ଲେଖିଥିଲି ?

ଜଗଦମ୍ବା — ସେଥିରୁ କଣ ସନ୍ଦେହ କରୁଛି ? — ଗୁଡ଼, ଚିଠିଟା ଏକା ବେଶ ସମୟରେ ପଠାଇଥିଲୁ, କିନ୍ତୁ କଣ ହେବ ? 'ମୋତେ ଯେତେ ମାରିବୁ ମାଠ, ମୁଁ ସେହି ଦରପୋଡ଼ା କାଠ' ।

ଗୋବର୍ଦ୍ଧନ — ସତେ ନାନା ! ଏପରି ମଣିଷ ମୁଁ ଦୁନିଆରେ ଆଉ ଗୋଟିଏ ବି ଦେଖିନାହିଁ ।

ଜଗଦମ୍ବା — ଗୋବରା ! ତୋତେ କେହି ସନ୍ଦେହ କରି ନାହାନ୍ତି ତ ?

ଗୋବର୍ଦ୍ଧନ — ହାଃ-ହାଃ-ହାଃ — ଗୋବର୍ଦ୍ଧନ ପରି ବୁଦ୍ଧି ହେଲେତ ଗୋବର୍ଦ୍ଧନକୁ ସନ୍ଦେହ କରିବ ? — ଶୁଣ ନାନା ! ଅଜି ଯେତେବେଳେ ନଗରମୟ ରାଷ୍ଟ୍ର ହୋଇଗଲା — ମହାରାଜ ଷଡ଼ଯନ୍ତ୍ର କରି ଅର୍ଜ୍ଜୁନକୁ ମରାଇଛନ୍ତି, ତେତେବେଳେ ସେ ବିଷୟ ପ୍ରକାଶ କରି ସମସ୍ତଙ୍କୁ ଡ଼ାକି କହିଲେ ଯେ, ଅର୍ଜ୍ଜୁନକୁ ହତ୍ୟା କରିବାର ଆଦେଶ ସେ ଆଦୌ ଦେଇ ନାହାନ୍ତି — ଏ ନିଶ୍ଚୟ ଅନ୍ୟ କାହାରି କାର୍ଯ୍ୟ —

ଜଗଦମ୍ବା — ତା' ପର କଣ ହେଲା ?

ଗୋବର୍ଦ୍ଧନ — ତେଣୁ ସମସ୍ତଙ୍କର ସନ୍ଦେହ ମୋ ଉପରେ ପଡ଼ିଲା ।

ଜଗଦମ୍ବା — ତୁ ସେଇଠୁ କଣ କଲୁ ?

ଗୋବର୍ଦ୍ଧନ — ମୁଁ ହୁକୁମନାମା ଖଣ୍ଡିକ ପଢ଼ିଦେଲି ।

ଜଗଦମ୍ବା — ତା' ପର କଣ ହେଲା ?

ଗୋବର୍ଦ୍ଧନ — ରାଜା ମେଘ-ଗର୍ଜ୍ଜନରେ କହି ଉଠିଲେ, 'ଏ ଜାଲ ହୁକୁମ' ।

ଜଗଦମ୍ବା — ତା ପର ତୁ କଣ କଲୁ ?

ଗୋବର୍ଦ୍ଧନ — ମୁଁ ଧୂର୍ତ୍ତ କରି ହୁକୁମନାମା ଖଣ୍ଡିକ ସମସ୍ତଙ୍କ ଆଗରେ ଥୋଇଦେଲି — ଶେଷକୁ ରାଜାଙ୍କ ହାତକୁ ବଢ଼ାଇ ଦେଲି ।

ଜଗଦମ୍ବା — ସେଇଠୁ କଣ ହେଲା ?

ଗୋବର୍ଦ୍ଧନ — ନିଜର ଦସ୍ତଖତ ଦେଖି ରାଜା ତ ଗୁମ୍‌ଆ ! — ଭାଗ୍ୟକୁ ଆମେ ବୁଦ୍ଧି ର କାମ କରି ସାଦା କାଗଜରେ ଦସ୍ତଖତଟି କରାଇ ରଖିଥିଲୁଁ ।

ଜଗଦମ୍ବା — ସେ କିଛି କହିଲେ ନାହିଁ ?

ଗୋବର୍ଦ୍ଧନ — କିଏ — ଭେଟେଇ ନା ? ହୁକୁମନାମା ଖଣ୍ଡିକ ନ ଦେଖିବା ଯାଏ ତ ମୋ ଆଡ଼େ କଟମଟ୍ କରି ଚାହିଁଥିଲେ — ଯେମିତି ସେ ଖଣ୍ଡିକ ଦେଖିଛନ୍ତି ରାଜାଙ୍କ ଆଡ଼କୁ ଚାହିଁ ଗୋଟାଏ ଲମ୍ବା ଚୌଡ଼ା ନିଃଶ୍ୱାସ ଛାଡ଼ି ମୁଣ୍ଡରେ ହାତ ଦେଇ ବସି ପଡ଼ିଲେ ।

ଜଗଦମ୍ବା — ତେବେ ବି ସୁବା ତାଙ୍କ ଉପରେ ରାଗିଲେ ନାହିଁ ?

ଗୋବର୍ଦ୍ଧନ — ରାମକୃଷ୍ଣ ! ଅଜି କାଲି ଭଲ କେମିତି ଦେଖିନ୍ତୁ ?

ଜଗଦମ୍ବା — ଖାଲି 'ଅଜି' 'ଅଜି' ବୋଲି ଡକା ପାରୁଛନ୍ତି, ଆଉ ଥାଇ ଥାଇ ମୁର୍ଚ୍ଛା ଯାଉଛନ୍ତି - ଏଇକାମ । ଥରେ ଭଲ କହିଲେ 'ପ୍ରତିଶୋଧ' — 'ପ୍ରତିଶୋଧ' ।

ଗୋବର୍ଦ୍ଧନ — ଏତେ ପରିଶ୍ରମ ସବୁ କଣ ମାଟି ହୋଇଗଲା ନାନି ?

ଜଗଦମ୍ବା   ତେବେ, ତୋର ଅବଧାନ କଥା କଣ ମିଛ ହେଲା ଗୋବରା ?

ଗୋବର୍ଦ୍ଧନ   କ'ଣ ? ଅବଧାନ କଥା ମିଛ ହେବ ? ଆଉ କଣ କିଛି ଉପାୟ ନାହିଁ ?

ଜଗଦମ୍ବା — ଏହାଠୁ ବଳି ଆଉ କି ଉପାୟ କରିପାରିବୁ ଗୋବରା ?

ଗୋବର୍ଦ୍ଧନ — ଆଜି ଯା' ନାନି — ରାତି ଅନେକ ହେଲଣି । କାଲି ଗୋଟାଏ ଉପାୟ ଭାବି ନିଶ୍ଚୟ ଠିକ୍ କରିବ ।

ଜଗଦମ୍ବା — ଯେତେ ଚଞ୍ଚଳ ପାରୁ ଠିକ୍ କର । ଗୋବରା, ଆଜି ତୁ କେଉଁଠି ରହିବୁ ?

ଗୋବର୍ଦ୍ଧନ   ଯେଉଁଠି ସୁବିଧା ଦେଖିବ ।

ଜଗଦମ୍ବା - ସାବଧାନ ହୋଇ ରହିବୁଟି ?

ଗୋବର୍ଦ୍ଧନ — ମୋ ପାଇଁ କିଛି ଭାବନା ନାହିଁ ନାନି ଭାବିବୁ ଯଦି ଖାଲି ଭେଟେଇଙ୍କ ପାଇଁ ଭାବ । ଭାବିବୁ ବା କାହିଁକି ? ଅବଧାନ କଥା ନିଶ୍ଚୟ ଫଳିବ ।

ଜଗଦମ୍ବା — ଈଶ୍ୱର ଜାଣନ୍ତି !

[ କିପଣ୍ଡିତ ହାତରେ ଉଭୟଙ୍କ ପ୍ରସ୍ଥାନ ପରେ
ଭିନ୍ନ ସ୍ଥାନରୁ କମଳା ପ୍ରବେଶ କଲା ]

କମଳା—ଆହୁରି ପୁଣି କ'ଣ କରିବାକୁ ଯାଉଛନ୍ତି—ମା, ମା ! ଏତେ ରାକ୍ଷସୀ ତୁହି ? ମାମୁଁ, ମାମୁଁ ଏତେ ପିଶାଚ ତୁମ୍ଭେ ?—ତୁମ୍ଭମାନଙ୍କ ହେତୁ ଅକ୍ଲେଶ ମୋର ଏ ସଂସାରରେ ନାହିଁ । ହାଇ ! ହାଇ ! କେଉଁଠାକୁ ଚାଲିଗଲ ? ଯାନ ଭଉଣୀଟାକୁ ତୁମର ଏତେ ଆଦର, ଏତେ ଯତ୍ନ କରୁଥିଲ, ତାକୁ କାହିଁକି ସାଙ୍ଗରେ ନ ନେଇ ଚାଲିଗଲ ?

( କାନ୍ଦିଲା )

[ରଙ୍ଗିଲ ପ୍ରବେଶ କରି]

ରଙ୍ଗିଲ—ମା' ଏତେ ରାତରେ କୁଆଡେ ଯାଉଥିଲେ ? ନିଶ୍ଚୟ ପୁଣି କୌଣସି ଷଡଯନ୍ତ୍ର ଚାଲିଛି । ଭଲ, ମୋର ଆଉ ସେଥିରେ କି ପ୍ରୟୋଜନ—ମୋର ଆଉ ସଂସାର ସହିତ କି ସମ୍ପର୍କ ? ସ୍ତ୍ରୀର ଯାହା ଗୌରବର ସାମଗ୍ରୀ ତାହା ଯେତେବେଳେ ଚୂର୍ଣ୍ଣୀଭୂତ—ସ୍ତ୍ରୀର ଯେ ପ୍ରଧାନ ଭରସା, ସେ ଯେତେବେଳେ ଅନ୍ତର୍ହିତ, ସେତେବେଳେ ଏ' ଜୀବନରେ ମଧ୍ୟ ମୋର ଆଉ କି ପ୍ରୟୋଜନ ? କାହିଁପାଇଁ ଆଉ ଏ ନିଃସହାୟ କଳଙ୍କିତ ପ୍ରାଣ ବହନ କରି ଆପଣାକୁ ଓ ପରକୁ କଷ୍ଟ ଦେବି ? ଯାଏଁ, ଯେତେ ଶୀଘ୍ର ପାରେ ପତିଙ୍କ ସଙ୍ଗେ ମିଳିତ ହୁଏ । ଆହା, କମଳ ସଙ୍ଗେ ଥରେ ଦେଖା ହୋଇ-ଥାନ୍ତା ! କେଉଁଠି ସେ ଶୋଇଛି, ଖୋଜି ପାଇଲି ନାହିଁ—ଖାଲି ବାବାଙ୍କ ବିଷୟରେ ତାକୁ ସାବଧାନ କରିଦେଇ ଥାନ୍ତି—

କମଳା—(ଉଠି) କିଏ ? ନୂଆବୋଉ !

ରଙ୍ଗିଲ—ଏହି ଯେ କମଳା ! ତୁମେ ଏତେବେଳେ ଏଠି କାହିଁକି ଭଉଣୀ ?

କମଳା—କୁହନା ନାନି !　　　　(କାନ୍ଦିଲା)

ରଙ୍ଗିଲ　ମୁଁ ଜାଣେ ଭଉଣୀ -- ତୁମେ ମା'ଙ୍କ ପଛେ ପଛେ ଆସିଥିଲ ।

କମଳା—ନାନି !　　(କୁଣ୍ଢେଇ ପକାଇ କାନ୍ଦିଲା)

ରଙ୍ଗିଲ　ମୋ କଥା ଠିକ୍ କି ନା କୁହିଲ ତ ?

କମଳା　ନାନି ! ମା' ମାମୁଁଙ୍କ ଦଶା କ'ଣ ହେବ ?

ରଙ୍ଗିଲ—(ଦୀର୍ଘନିଃଶ୍ୱାସ ତ୍ୟାଗକରି) ଈଶ୍ୱର ଜାଣନ୍ତି　ମୁଁ ଆଜି ଯାଉଛି କମଳା ।

[କମଳାକୁ ଆଲିଙ୍ଗନ କରି କାନ୍ଦି ପକାଇଲେ]

କମଳା　କେଉଁଠାକୁ ଯାଉଛ ନାନି ?

ରଙ୍ଗିଲ—ଯେଉଁଠାକୁ ତୁମର ଭାଇ ଯାଇଛନ୍ତି ଭଉଣି ।

କମଳା— ମୋତେ ବ ସେହିଠାକୁ ନେଇଚାଲ ନାନି ।

ରଙ୍ଗିଲ ନା କମଳ ! ତୁମର ସେଠାକୁ ଦିବାର ସମୟ ଆସିନାହିଁ; ଏଠାରେ ଅନେକ କାମ ।- ଦେଖ ଭଉଣି ! ବାବାଙ୍କ ପାଇଁ ମୋର ଖାଲି ଭୟ ।

କମଳା— ଶେଷରେ କଣ ବାବାଙ୍କୁ ମୋର ହରାଇବ ନାନି ?

ରଙ୍ଗିଲ— ତୁମେ ସାବଧାନ ଥିଲେ କିଛି ଭୟନାହିଁ ଏହି କଥା ଖାଲି କହିଦିବି ବୋଲି ତୁମକୁ ଖୋଜୁଥିଲି । ବର୍ତ୍ତମାନ ମୁଁ ଆସୁଛି— ସକାଳ ହୋଇଗଲା । (ଚାଲିଗଲେ)

କମଳା— ନୂଆବୌ, ନୂଆବୌ ! ଶରଧନ ପାଇଁ କଣ ତୁମ କମଳକୁ ଛାଡ଼ି ଯାଉଛ ? ଯାଅ ନୂଆବୌ । ଆନନ୍ଦରେ ତାଙ୍କ ନିକଟକୁ ଚାଲିଯାଅ ।—ତୁମେ ଠିକ୍ କହିଛ, ମୋର ଏଠାରେ ଅନେକ କାମ—ବାବାଙ୍କ ପାଇଁ ଖାଲି ଭୟ; କିନ୍ତୁ ଏଇ ବାଳିକା ଏକା କ'ଣ କରି ପାରିବ ? ତେବେ ପ୍ରାଣ ଥିବାଯାଏ କମଳା ଆଖିଠୁଁ ତାର ପିତାର ପ୍ରହରୀ ହୋଇ ରହିଲା ବଉଳକୁ ମଧ୍ୟ କହିଦେବ, ସେ ମହାରାଜା ଓ ରାଣୀମା'ଙ୍କ ପ୍ରହରୀ ହୋଇ ରହିବେ ।- ମା ! ତୁମେ ଆମର ଧୂଳିଖେଳ ଭାଙ୍ଗି ଦେଇଛ; କିନ୍ତୁ ଏ ଖେଳ କେବେ ଭାଙ୍ଗି ପାରିବ ନାହିଁ । (ପ୍ରସ୍ଥାନ କଲା)

— ୦ —

## ତୃତୀୟ ଦୃଶ୍ୟ :—

( ଉଦ୍ୟାନ )

[ କଲ୍ୟଦେବ ପଦଚାରଣା କରୁଥିଲେ ]

କଲ୍ୟ — ମୁଁ ହୁକୁମ ଦେଇଛି ? ମୁଁ ଦସ୍ତଖତ କରିଛି ? — କଦାପି ନୁହେଁ — ନିଶ୍ଚୟ ତାହା ଜାଲ୍, ନିଶ୍ଚୟ ତାହା ମିଥ୍ୟା ! କାହିଁ ସେ କାଗଜ ? — କିଏ ଅଛ ?

[ ଜନୈକ ଦେହରକ୍ଷୀ ପ୍ରବେଶ କଲା ]

ଦେହରକ୍ଷୀ — ମହାରାଜ !

କଲ୍ୟ — କାହିଁ ସେ କାଗଜ ?

ଦେହରକ୍ଷୀ — କେଉଁ କାଗଜ ମହାରାଜ ?

କଲ୍ୟ — ତୁ ଜାଣୁନା ? — ଉପରେ ଚନ୍ଦ୍ର-ତାରା — ଶୂନ୍ୟରେ ପକ୍ଷୀ-ପତଙ୍ଗ — ନିମ୍ନରେ ବୃକ୍ଷ-ଲତା, ସମସ୍ତେ ଜାଣନ୍ତି — ତୁ ଜାଣୁନା ?

ଦେହରକ୍ଷୀ — ( ସଭୟେ ) ମହାରାଜ !

କଲ୍ୟ — ମୁଁ କପରି ଖଣ୍ଡେ ସାଦା କାଗଜରେ ଖାଲି ଗୋଟିଏ ଦସ୍ତଖତ କରିଦେଲି, ସଙ୍ଗେ ସଙ୍ଗେ ଗୋଟିଏ ଲୋକର — ଲୋକ ପରି ଲୋକର — ମୋର ପୁଣି ଆବାଲ୍ୟ ସହଚରର ଶିରଚ୍ଛେଦ ହୋଇଗଲା !

ଦେହରକ୍ଷୀ — ମ-ହା-ରା-ଜ !

କଲ୍ୟ — ମୁଁ ଠିକ୍ କରିଥିଲି, ଆଜୀବନ କୁମାର ରହିବି — ସାରା ଜୀବନ ନିଭୃତରେ ବସି ମାନସୀ ପ୍ରତିମାକୁ ମୋର ଧ୍ୟାନ କରୁଥିବି — କିନ୍ତୁ କିଏ ସେ ଆସି ମୋ ଉପରେ ପୂର୍ଣ୍ଣ ଅଧିକାର କରିବସିଲା, ମୋତେ ଅନ୍ୟ ପଥ ଦେଖାଇଦେଲା ? — ମୁଁ ଦୁର୍ବଳ, ତା'ର କଥାରେ ସମ୍ମତ ହେଲି, ତା'ର କଥାରେ ଚାଲିଲି — ସୁତରାଂ ବେଶ୍ କାର୍ଯ୍ୟ କରିଛି — ବେଶ୍ ପାପ ଅର୍ଜନ କରିଛି — କିନ୍ତୁ ପ୍ରତିଫଳ କି ପାଇଛି ? କିଛି ତ ଏ' ପର୍ଯ୍ୟନ୍ତ ପାଇ ନାହିଁ ? — ଉଃ ! ମୋର କି ଦଶା ହେବ ? ମୋର କି ଗତି ହେବ ?

( ଭୟରେ କମ୍ପିଲେ )

ଦେହରକ୍ଷୀ — ମହାରାଜ ! ସ୍ଥିର ହେଉନ୍ତୁ ।

କଲ୍ୟ — ହାଃ-ହାଃ-ହାଃ — ସ୍ଥିର ହେବି — ଏହି ଅସ୍ଥିର ହୃଦୟ ବହନ କରି ?

ଦେହରକ୍ଷୀ — ମହାରାଜ !

କଳ୍ପବୃ—ଦେଖ, ଦେଖ, ଋଷି ! ଏହି ତାରକାଖଚିତ ବିଶାଳ ଆକାଶ ଉପରେ ମୋର ମୁଖାବଲୋକନ ମାତ୍ରକେ ଅନ୍ଧାର ହେଉଛି—ଏହି ମୃଦୁ ମନ୍ଦ ଦକ୍ଷିଣା ପବନ ଉପରେ ମୋର ଗାତ୍ର ସ୍ପର୍ଶ ମାତ୍ରକେ ଝଟିକା ବେଗ ଧାରଣ କରୁଛି—ଏହି ସର୍ବଂସହା ପୃଥିବୀ ଉପରେ ମୋର ଚରଣତଳ ସ୍ପର୍ଶ ମାତ୍ରକେ ଆଲୋଡ଼ିତ ହେଉଛି—ଉପରେ ଅଗ୍ନିର ମୂର୍ତ୍ତି !—ଉପରେ ଅଗ୍ନିର ମୋର ସର୍ବାଙ୍ଗ !

[ କମ୍ପିବାକୁ ଲଗିଲେ ]

[ ଗୋବିନ୍ଦ ବିଦ୍ୟାଧର ପ୍ରବେଶ କରି ]

ଗୋବିନ୍ଦ—ମହାରାଜ !

କଳ୍ପବୃ—କିଏ ? ମନ୍ତ୍ରୀ ଭାଇ ! କାହିଁ ସେ କାଗଜ ?—ଠିକ୍ ମୋହର ଦସ୍ତଖତ ? ଜାଲ ନୁହେଁ ତ ? ତୁମ୍ଭେ ଠିକ୍ ପରୀକ୍ଷା କରି ଦେଖିଛ ତ ? କାହିଁ, ଆଉ ଥରେ ମୋତେ ଦେଖାଅ ?

ଗୋବିନ୍ଦ—ମହାରାଜ ! ଯାହା ହେବାର ହୋଇଛି—ଭିତରକୁ ଚାଲନ୍ତୁ—ମା ସେଠାରେ ବ୍ୟସ୍ତ ହେଉଛନ୍ତି ।

କଳ୍ପବୃ—କାହିଁ, ତୁମେ ତ ବ୍ୟସ୍ତ ହେଉ ନାହଁ ? ତୁମର ପୁତ୍ର ଯାଇଛି—ତୁମର ପୁତ୍ରବଧୂ କଳଙ୍କିନୀ ଓ ଦେଶତ୍ୟାଗିନୀ ହୋଇଛି—ଆପଣାର ସୁପ୍ରତିଷ୍ଠ ବଂଶଗୌରବ ଓ ସମ୍ମାନ ସମୂଳେ ଉତ୍ପାଟିତ ହୋଇଛି—କାହିଁ, ତୁମେ ତ ତିଳେମାତ୍ର ବ୍ୟସ୍ତ ହେଉନାହଁ ?

ଗୋବିନ୍ଦ—କାହିଁକି ବ୍ୟସ୍ତ ହେବି, ମହାରାଜ ? ମୁଁ ସେ ରାଜାଙ୍କ ପାଇଛି । ରାଜାର ଉପକାରାର୍ଥେ, ଦେଶର ଉପକାରାର୍ଥେ ଅକାତରେ ଲକ୍ଷ ଲକ୍ଷ, କୋଟି କୋଟି ପ୍ରାଣ ବଳି ଦିଆଯାଏ—ମୁଁ ଯେବେ ଦୁଇଟି ମାତ୍ର ପ୍ରାଣବଳି ଦ୍ୱାରା ନିଜର ସାମାନ୍ୟ ବଂଶ-ମର୍ଯ୍ୟାଦା ବଳିଦ୍ୱାରା, ରାଜାର ପରମ ଉପକାର କରିପାରିଲି ଦେଶର ପ୍ରଭୂତ କଲ୍ୟାଣ ସାଧନ କରିପାରିଲି; ତେବେ ଆଉ ଭାବନା କାହିଁକି ? ବ୍ୟସ୍ତ ହେବାର କାରଣ ବା କଣ ?

କଳ୍ପବୃ—ମନ୍ତ୍ରୀଭାଇ ! ମନ୍ତ୍ରୀଭାଇ ! ଏ ବିଷ ତୀକ୍ଷ୍ଣ ଛୁରିକା ଆଉ ପ୍ରୟୋଗ କର ନାହିଁ । ଏଥିରେ ମଧୁର ବିଷଜ୍ୱାଳା ପୁଣି ନିତାନ୍ତ ଅସହ୍ୟ !—ଉଃ, ଭୀଷଣ ଜ୍ୱାଳା ଭୀଷଣ ଯନ୍ତ୍ରଣା —ରକ୍ଷାକର ! ରକ୍ଷାକର ! ମୁଁ ପରା ତୁମ୍ଭର ସାନଭାଇ ?—ତୁମେ ଏପରି ମୋତେ ପରୀକ୍ଷା କରିଛ ?—ଟିକିଏ ଦୟା ହେଉନାହିଁ ?—ଟିକିଏ ଅନୁକମ୍ପା ହେଉନାହିଁ ? ହାତ ଧରୁଛି—ଗୋଡ଼ ଧରୁଛି, ଅବୋଧ ଶିଶୁକୁ—

ଗୋବିନ୍ଦ—ମହାରାଜ ! ମହାରାଜ ! ଏ' କଣ କହୁଛନ୍ତି ? ଏ' କୋଳରେ, ଏ' ଦେହରେ ଯେ ଆପଣଙ୍କର ଚିର ଅଧିକାର ।—ଆସନ୍ତୁ ଏ' କୋଳକୁ, ମହାରାଜ !

[ ଆଲିଙ୍ଗନ କରିବାକୁ ଯିବାବେଳେ ]

କଲୁଆ—ଚନ୍ଦ୍ର ଭାଇ ! ଦେଖ, ଦେଖ—କିଏ ସେହି ? ନଷ୍ଟମୟ ସେହି ଗୋବର୍ଦ୍ଧନ—ନଷ୍ଟମୟ ସେହି ପାପିଷ୍ଠ !

ଗୋବିନ୍ଦ—କାହିଁ ? କେଉଁଠି ?

କଲୁଆ—ସେଇଠି—ସେଇ ଜଙ୍ଗଲ ଭିତରେ—ଦେଖି ପାରୁନାହଁ ? ଧଅ ମୋତେ ତରବାରି—ମୁଁ ଖୁନ୍ କରି ଅଟେ; ନଚେତ୍ ସେ ଏହିକ୍ଷଣି ତୁମକୁ ବି ଖୁନ କରିବ—ମୋତେ ବି ଖୁନ୍ କରିବ ।     [ ଗମନୋଦ୍ୟତ ]

ଗୋବିନ୍ଦ—ମହାରାଜ ! କେହି ନାହାନ୍ତି, ଆପଣ ସ୍ଥିର ହୁଅନ୍ତୁ ।

କଲୁଆ—କାହିଁ, ଅଭ ତ ଦିଶୁନାହିଁ ? ତେବେ କଣ ସେ ଚାଲିଗଲା ? କାଲି ତାକୁ ଧରିଆଣ ମନ୍ତ୍ରି—ମହାରାଜାଙ୍କ ହୁକୁମ !—ସେହି ମୋର ସର୍ବନାଶ କରିଛି ।

ଗୋବିନ୍ଦ—ଅଚ୍ଛା, କାଲିକାର କଥା କାଲି ହେବ—ଆପଣ ବର୍ତ୍ତମାନ ଭିତରକୁ ଚାଲନ୍ତୁ ।

କଲୁଆ—ନା ମନ୍ତ୍ରୀ ଭାଇ, ମୁଁ ଭିତରକୁ ଯିବନାହିଁ—ମା ଗାଳିଦେବ ।

ଗୋବିନ୍ଦ—ନା, ମହାରାଜ ! ମା ଗାଳିଦେବେ ନାହିଁ—ଗାଳିଦେଲେ ମୁଁ ଅଛି ।

କଲୁଆ—ସମସ୍ତ ପ୍ରଜା ଯେ ମୋର ବିରୁଦ୍ଧରେ ବର୍ତ୍ତମାନ ଦଣ୍ଡାୟମାନ—

ଗୋବିନ୍ଦ—( ସହାସ୍ୟେ ) ଭୟ କ'ଣ ?

କଲୁଆ—ଭୟ ହେବ ନାହିଁ ? ତୁମ୍ଭେ ବୃଦ୍ଧ—ନିଃସହାୟ—ଏକା କ'ଣ କରିବ ?

ଗୋବିନ୍ଦ—ଏକା କ'ଣ କରିବ ? ଜାଣନ୍ତି ନାହିଁ ମହାରାଜ, ଏ ବୃଦ୍ଧ ସ୍ୱର୍ଗୀୟ ପିତାଙ୍କ ଅନୁଗ୍ରହରେ କେତେ ଶସ୍ତ୍ର ଧାରଣ କରିଛି । ସମସ୍ତ ଉତ୍କଳ-ସେନା ଏ ବୃଦ୍ଧର ଇଙ୍ଗିତରେ ଚାଳିତ—ସମସ୍ତ ପ୍ରଜା ଏ ନିଃସହାୟର ଚରଣ ପ୍ରାନ୍ତରେ ଅବନତ—ସମଗ୍ର ଉତ୍କଳଖଣ୍ଡ ଏ ରାଜ-ଭକ୍ତର ମୁଷ୍ଟି ମଧ୍ୟରେ ଅବସ୍ଥିତ ।

କଲୁଆ—ତେବେ ଏ ଦୁର୍ବଳ ଜନିଷ୍ଠ ଭାଇକୁ ଆଶ୍ରୟ ଦେବ ତ ଭାଇ ?

ଗୋବିନ୍ଦ—ମହାରାଜ ! ମହାରାଜ ! ( ଆଲିଙ୍ଗନ କରି ) ଆଜି କି ଆନନ୍ଦ ! ପୁତ୍ରକୁ ହରାଇ, ରାଜାଙ୍କୁ ପାଇଛି—ନିଜର ବଂଶ ବଳି ଦେଇ, ରାଜବଂଶ ରକ୍ଷା କରିଛି ।

( ସମସ୍ତେ ପ୍ରସ୍ଥାନ କଲେ )

[ଗୋବର୍ଦ୍ଧନ ପ୍ରବେଶ କରି ]

ଗୋବର୍ଦ୍ଧନ—ଏତେ ଦୂର ! ଯେଉଁ ଗୋବର୍ଦ୍ଧନ ନ ହେଲେ ଦଣ୍ଡେ ଚଳୁ ନ ଥିଲ—ସେହି ଗୋବର୍ଦ୍ଧନ ବର୍ତ୍ତିମାନ ଜାତ-ଶତ୍ରୁ ! ଭାଗ୍ୟକୁ ଅନ୍ୟ କାହାରି ନଜରରେ ପଡ଼ି ନାହିଁ--- ତା ନ ହେଲେ ତ ଦଫାରଫା ହୋଇଥିଲ ! ଏବେ ଉପାୟ କ'ଣ ? — ଭେଣ୍ଡେଇଙ୍କର ମଧ୍ୟ କୌଣସି ପରିବର୍ତ୍ତନର ସମ୍ଭାବନା ଦେଖୁନାହିଁ । ଅବଧାନ କଥା କଣ ତେବେ ମିଛ ହେଲା ?—କଦାପି ନୁହେଁ—ଯାଏଁ ନାନୀ ସଙ୍ଗେ ପରାମର୍ଶ କରେ । (ଚାଲିଗଲା)

—୦—

ଚତୁର୍ଥ ଦୃଶ୍ୟ :—

( କକ୍ଷ )

[ ଅର୍ଜୁନ ଓ ବୀରେନ୍ଦ୍ର ]

ଅର୍ଜୁନ—ମୋର କିନ୍ତୁ ବିଶ୍ୱାସ ହେଉନାହିଁ ଯେ ସଙ୍ଗୀତ ଏପରି ଷଡଯନ୍ତ୍ରର କର୍ତ୍ତ୍ରୀ ।

ବୀରେନ୍ଦ୍ର—ଆପଣଙ୍କ ପରି ସରଳ ଲୋକ ତ ବିଶ୍ୱାସ କରିପାରିବ ନାହିଁ !

ଅର୍ଜୁନ—ଆପଣ କ'ଣ ବିଶ୍ୱାସ କରନ୍ତି ଯେ ସାମାନ୍ୟ ଗୋଟିଏ ସ୍ତ୍ରୀ ପାଇଁ ଲୋକ ଏତେଦୂର ନୀଚ-କାର୍ଯ୍ୟ କରିପାରେ ?

ବୀରେନ୍ଦ୍ର—(ମନ୍ଦହାସ୍ୟ କଲେ)

ଅର୍ଜୁନ—ହସିଲେ ଯେ ?

ବୀରେନ୍ଦ୍ର—ଆପଣ, ଦେଖୁଛି ସଂସାର ମଧ୍ୟରେ ଆଦୌ ପ୍ରବେଶ କରିନାହାନ୍ତି ।

ଅର୍ଜୁନ—ସଂସାର ମଧ୍ୟରେ ପ୍ରବେଶ କଲେ କ'ଣ ଦେଖିବାକୁ ହୁଏ ଯେ ଲୋକ ସାମାନ୍ୟ ସ୍ତ୍ରୀର ଲୋଭରେ ନରହତ୍ୟା, ନିଜର ସଙ୍ଗୀତକୁ ହତ୍ୟା ପର୍ଯ୍ୟନ୍ତ କରିବାକୁ କୁଣ୍ଠିତ ନୁହେଁ—ନା, ନା, ତା କାହିଁକି ହେବ ? ଯଦି ଏ ଷଡ଼ଯନ୍ତ୍ର ସତ୍ୟ ହୁଏ—ଆପଣ ତ ମୋର ଅପରିଚିତ—ଆପଣ କାହିଁକି ରାଜା-ଦେଶ ଛାଡ଼ି କରି—ନିଜର ପ୍ରାଣକୁ ଉତ୍ସର୍ଗ କରି, ଅପରର ପ୍ରାଣ ରକ୍ଷା କରିବାକୁ ଉଦ୍ୟତ ? ଏ ସଂସାର କଦାପି ପାପମୟ ନୁହେଁ । ସଙ୍ଗୀତ ଯେବେ ଏହି ନୀଚ ଷଡ଼ଯନ୍ତ୍ରକାରୀ ହୋଇଥାନ୍ତି, ତେବେ ସେ ନିଶ୍ଚୟ ଉନ୍ମାଦ ।

ବୀରେନ୍ଦ୍ର—ନିଶ୍ଚୟ ଉନ୍ମାଦ କହିବାକୁ ହେବ ।

ଅର୍ଜୁନ—ତେବେ ଆଉ କ'ଣ ? ଉନ୍ମାଦ ଯେ କେବେ କେବେ ପିତୃ-ମାତୃ-ହତ୍ୟା, ଆତ୍ମ-ହତ୍ୟା ପର୍ଯ୍ୟନ୍ତ କରି ବସେ—ସେ ସଙ୍ଗୀତକୁ ଯେ ହତ୍ୟା କରିବାକୁ ଆଦେଶ ଦେବ, ସେଥିରେ ବିଚିତ୍ରତା କ'ଣ ? କିନ୍ତୁ—

ବୀରେନ୍ଦ୍ର—କିନ୍ତୁ କ'ଣ ?

ଅର୍ଜୁନ—ମୁଁ ତ ଉନ୍ମାଦର ଲକ୍ଷଣ କିଛି ଦେଖି ଆସି ନ ଥିଲି ? ହଠାତ୍ କିଣ ଏହି ପରିବର୍ତ୍ତନ ଘଟିଛି—ମୁଁ ବୁଝି ପାରି ନ ଥିଲି ? ହାୟ ! ହାୟ ! ସଙ୍ଗୀତ ମୋର ଉନ୍ମାଦ ହୋଇଛନ୍ତି ! ଏହିକ୍ଷଣି ମୋତେ ବିଦାୟ ଦିଅନ୍ତୁ—ସଙ୍ଗୀତଙ୍କ ପାଇଁ ମନ ଭାରି ବ୍ୟାକୁଳ ହେଉଛି !

ବୀରେନ୍ଦ୍ର—ଆପଣ ଆଜି ଯେ ଉନ୍ମାଦ ଦେଖୁଛନ୍ତି ?

ଅର୍ଜ୍ଜୁନ—ବାତୁଳ—ସଙ୍ଗୀତ ଉନ୍ମାଦ ଜାଣି, ମୁଁ ଉନ୍ମାଦ ହୋଇଛି । କିପରି ମୋ ମୂର୍ଖମତ ହେବେ—କିପରି ମୋ ଆରୋଗ୍ୟ ଲାଭ କରିବେ, ଏହା ହିଁ ବର୍ତ୍ତମାନ ଏକମାତ୍ର ଚିନ୍ତା ମୋର—(ନିଜ ମନେ) ଖାଲି ଚିନ୍ତା କଲେ ତ ଚଳିବ ନାହିଁ, ଯଥାମତ ଚିକିତ୍ସା କରିବାକୁ ହେବ—ଯତ୍ନ କରିବାକୁ ହେବ—(ପ୍ରକାଶ୍ୟେ) ଶୀଘ୍ର ମୋତେ ବିଦାୟ ଦିଅନ୍ତୁ ! ଆଉ ଯେ ବିଳମ୍ବ କରି ପାରୁନାହିଁ !

ବୀରେନ୍ଦ୍ର—ବୈଦ୍ୟ ମହାଶୟ ! ଆପଣ କ'ଣ ମୋ ଉନ୍ମତ୍ତତା ଆରୋଗ୍ୟ କରିପାରିବେ ?

ଅର୍ଜ୍ଜୁନ—କାହିଁକି ନ ପାରିବି ? ତେବେ, ଉନ୍ମତ୍ତତାର କାରଣ କ'ଣ ତାହା ମୋତେ ଆଗେ ନିର୍ଣ୍ଣୟ କରିବାକୁ ହେବ ।

ବୀରେନ୍ଦ୍ର—ନିର୍ଣ୍ଣୟ କରିବାକୁ କଣ ଆଉ ବାକି ଅଛି ?

ଅର୍ଜ୍ଜୁନ—ରୋଗୀ ନ ଦେଖି ?

ବୀରେନ୍ଦ୍ର—ଆପଣ କ'ଣ ଜାଣନ୍ତି ନାହିଁ, ଆପଣଙ୍କର ସ୍ତ୍ରୀଙ୍କ ହେତୁ ଆପଣଙ୍କର ସଙ୍ଗୀତ ଉନ୍ମାଦ ?

ଅର୍ଜ୍ଜୁନ—(ହାସ୍ୟକରି) ଆପଣ କଣ କହୁଛନ୍ତି ? ଏହା କି ଗୋଟିଏ ଉନ୍ମତ୍ତତାର କାରଣ ହୋଇପାରେ ? ଆପଣ ଯେ ଚିକିତ୍ସାଶାସ୍ତ୍ର ରଦ୍ କରିଦେବେ ଦେଖୁଛି ।

ବୀରେନ୍ଦ୍ର ଅଚ୍ଛା କହିଲେ, ସେ କି ଆପଣଙ୍କର ସ୍ତ୍ରୀଙ୍କୁ ଭଲ ପାଆନ୍ତି ନାହିଁ ?

ଅର୍ଜ୍ଜୁନ—ଖୁବ ଭଲପାଆନ୍ତି । ଭଲ ପାଇବେ ନାହିଁ ? ପିଲାଦିନୁ ଏକା ସଙ୍ଗେ ଖେଳି ଆସିଛନ୍ତି—ଏକା ସଙ୍ଗେ ବଢ଼ି ଆସିଛନ୍ତି—ଗୋପନରେ ପରସ୍ପର ମଧ୍ୟରେ ବିବାହ ହେବାର କଥା ମଧ୍ୟ ହୋଇଥିଲା—ଭଲ ପାଇବେ ନାହିଁ ?—ମୁଁ ଯେବେ ବିବାହ ପୂର୍ବରୁ ଏହା କଥାଟି ଜାଣିଥାନ୍ତି, ତାହାହେଲେ ପରା ଯେକୌଣସିମତେ ସେମାନଙ୍କୁ ମିଳାଇ ଦେଇଥାନ୍ତି । ବର୍ତ୍ତମାନ ମଧ୍ୟ ବିବାହ ଯେବେ ଓଲଟି ଦିବାର ହୁଅନ୍ତା, ତାହାହେଲେ ପରା ମହାନନ୍ଦରେ ତାଙ୍କର ଜିନିଷ ତାଙ୍କୁ ଫେରାଇ ଦିଅନ୍ତି । ଆହା, ଯେ ଯାହାର ସେ ତାହାର ହେବେ, କେତେ ଆନନ୍ଦ ନ ହୁଏ !—ମୁଁ ମୋର ସଙ୍ଗୀତକୁ ପାଉ ନ ଥିଲି ବୋଲି ମନ କେତେ ବ୍ୟାକୁଳ ହେଉଥିଲା; କିନ୍ତୁ କ'ଣ ହେବ ?—ବର୍ତ୍ତମାନ ଯେ ପାଇ ନ ପାଇଲି ଭଳି । ମହାଶୟ, ଜଣେ ଲୋକ ଦିଅନ୍ତୁ, ମୁଁ ଏହିକ୍ଷଣି ଯାତ୍ରା କରିବି । ସଙ୍ଗୀତ ପାଇଁ ମନ ବଡ଼ ବ୍ୟାକୁଳ ହେଉଛି—ଶୀଘ୍ର ତାଙ୍କର ଚିକିତ୍ସା କରିବାକୁ ହେବ !

ବୀରେନ୍ଦ୍ର – ହେଁ ଦ୍ୟ ମହାଶୟ ! ଯେପରି ଅବସ୍ଥା ଦେ ଛି, ନଜେ ଆପଣ ଉନ୍ମାଦ ହୋଇ-
ଯାଉଛନ୍ତି – ଉନ୍ମାଦର ପୁଣି ଚକତ୍ସା କରବେ କ'ଣ ?

ଅର୍ଜୁନ – ବାସ୍ତବକ, ତାଙ୍କପାଇଁ ମନ ଭାରି ବ୍ୟାକୁଳ ହେଉଛି । ଅନୁରୋଧ –

(ନେପଥ୍ୟେ) – ରାମକୁ ଫେର୍ କମ୍ପ ଦେଇ ଜର ଆସିଲଣି ।

ଅର୍ଜୁନ – ଫେର୍ ଜର ଆସିଲ ? ସେ ଔଷଧ ତେବେ ମାନଲ ନାହିଁ । ଅଚ୍ଛା, ଚାଲ ମା,
ମୁଁ ଅନ୍ୟ ଔଷଧ ଦେଉଛି ।

(ଚାଲଗଲେ)

ବୀରେନ୍ଦ୍ର – ଏ' ମନୁଷ୍ୟ ନା ଦେବତା ! ଏ'ପର ସରଳତା, ଏ'ପର ଅକୃତ୍ରିମତା, ମୁଁ ତ
ଅନ୍ୟ କୌଣସିଠାରେ, କେବେହେଲେ ଦେଖି ନାହିଁ ? ହାୟ ମହାରାଜ ! କାହାକୁ
ଆପଣ ହତ୍ୟା କରବାକୁ ବସିଥିଲେ ? କାହାକୁ ଆପଣ ହେୟ ଜହ୍ଲାଦ କରରେ
ନକ୍ଷେପ କରଥିଲେ ? – ଘାତକମାନଙ୍କ ମଧ୍ୟରେ କସ୍ତୁରତମ ଜାଣି ମୋ' ଉପରେ
ଏହ ଭାର ନ୍ୟସ୍ତ କରଥିଲେ – କନ୍ତୁ ଦେଖନ୍ତୁ, ଏ' ପାଷାଣ-ହୃଦୟ ଆଜ କପର
ତରଳ ଯାଉଛୁ – ନଜର ଭରଣପୋଷଣର ଏକମାତ୍ର ଉପାୟ, ରାଜ-ସୃଜନ୍ତିରେ
କପର ସେ ପଦାଘାତ କରଛୁ ! – ପୁଣି ଦୃଢ଼ ପ୍ରତଜ୍ଞା କରଛୁ, ଯେତେଦନ ପ୍ରାଣଥିବ,
ଏହ ଦେବତାଙ୍କ ସେବା ପୂଜା ତାର ଏକମାତ୍ର ଧର୍ମ – ଏହ ମହାଜନଙ୍କ ରକ୍ଷଣାବେକ୍ଷଣ
ତାର ଏକମାତ୍ର କର୍ତ୍ତବ୍ୟ ! ଯାହାହେଉ ରାଜ୍ୟମୟ ତ ରାଷ୍ଟ୍ର ହୋଇଗଲଣି ଯେ
ମନ୍ତ୍ରୀ ଗୋବନ୍ଦ ବଦ୍ୟାଧରଙ୍କ ପୁତ୍ର ମହାରାଜାଙ୍କ ଷଡ଼ଯନ୍ତ୍ରରେ ନହତ ହୋଇଛନ୍ତି—
ସୁତରାଂ ମହାରାଜ ଦୃଢ଼ ବଶ୍ୱାସ କରଥିଲେ ଯେ, ତାଙ୍କର ଆଦେଶ ଅକ୍ଷରେ ଅକ୍ଷରେ
ପ୍ରତପାଳତ ହୋଇଛୁ । – ମାତ୍ର ବର୍ତ୍ତମାନ କ ଉପାୟରେ ଏ' ମହାଜନଙ୍କୁ ରକ୍ଷା
କରୁଛୁ ? – ଯାହାଙ୍କ କୃପାରେ ଏ' ଅଧମ ଆଜ ସଦ୍‌ବୁଦ୍ଧି ଲାଭ କରଛୁ, ତାଙ୍କର
ଅନୁଗ୍ରହରେ ସେ ନଶ୍ଚୟ ଉପାୟ ଆବଷ୍କାର କରବାକୁ ସକ୍ଷମ ହେବ ।

(ପ୍ରସ୍ଥାନ କଲେ)

–○–

ପଞ୍ଚମ ଦୃଶ୍ୟ :—

ନନ୍ଦକିଶୋରଙ୍କ ପାର୍ଶ୍ୱ ଗୃହ (ରାତ୍ରି)

[ବିପରୀତ ଦିଗରୁ ଜଗନ୍ନାଥ ଓ କମଳା ପ୍ରବେଶ କଲେ]

କମଳା —

— ଗୀତ —

ଆଶାର ଦେବତା! ଆଶା କି ମୋହର
ସତେ ହେ କରିବ ପୂରଣ —
ଗୃହହୀନା ମୁହିଁ, ଆଶାବାଣୀ ଆଶେ
ଧରିଛି ଏ' ଗୁରୁ ଜୀବନ ।
ନିଶାକର ସମ ତୁମେ ହୃଦେ ମମ
ଢାଳିଦିଅ ଯେବେ ଜ୍ୟୋତି-ସୁଧା-ଧାର,
ଜାଣି ନ ପାରଇ, ହସିଯାଏ କାହିଁ —
ସତେ କି ନିଶା-ସ୍ୱପନ !

ଜଗନ୍ନାଥ — କିଏ, କମଳା ?
କମଳା — ହଁ, ମୁଁ । ଭାଇ କ'ଣ କରୁଛନ୍ତି ?
ଜଗନ୍ନାଥ — ଘରେ ତ ଶୋଇଥିଲେ, ମୁଁ ଆସିଲି । — ବାବା ?
କମଳା — ବାବା ବି ଶୋଇଲେ, ମୁଁ ଆସିଲି । — ବାବା ଆଜି ଯେପରି ଶୋଇଛନ୍ତି, କମଳ ଯେପରି ଶୁଆ ତ ତାଙ୍କର ମୁଁ ଆଉ କେବେ ଦେଖି ନାହିଁ ?
ଜଗନ୍ନାଥ — ଏ' କେତେ ଦିନ ହେଲା ତାଙ୍କର ତ ଅଉ କଷ୍ଟର ସୀମା ନାହିଁ ? — ଏକେ ପୁତ୍ର-ଶୋକ — ତହିଁରେ ତାଙ୍କର ଏପରି ଦଶା, ସେ ଚିନ୍ତା — ତେଣେ ରାଜାଙ୍କର ଦୁଃଖ । — ସେ ଏକା ବୃଦ୍ଧ, କେତେ ସମ୍ଭାଳିବେ — କ୍ଳାନ୍ତ ହୋଇପଡ଼ିବେ ନାହିଁ ?
କମଳା — ଅଚ୍ଛା, ଭାଇ ! ରାଜା ତ ଆଉ ଯେପରି ଏକା ତରଓ୍ୱାଲ ଧରି ନନ୍ଦ ବାଉଳାରେ ବଗିଚ୍ଛକୁ ଦୌଡ଼ ଯାଉନାହାନ୍ତି ?
ଜଗନ୍ନାଥ — ଏହି ପାଞ୍ଚ ଛଅ ଦିନ ହେଲା ସେପରି ଆଉ ନାହିଁ — ତା' ନହେଲେ କି ଗ୍ରୁଡ଼ିକରି ଆସି ପାରୁଥାଆନ୍ତି । ଜଗୁଆଳୀ ଗୁଡ଼ାକ ବେଳେ ବେଳେ ଯେପରି ଗରହୁଡ଼ିଆର

ହୁଅନ୍ତି ?—ଜେବେ ନିଦବାଙ୍ଗଲାରେ ମଧ୍ୟ 'ଗୋବନ୍ଦ ନ' 'ଗୋବର୍ଦ୍ଧନ' ଡାକ ତାଙ୍କର ବନ୍ଦ ନାହିଁ ।

କମଳା ସତେ ବଉଳ ! ମାହ୍ଲି ଥାଇ ମା'ଙ୍କ ପାଇଁ ତୁମର ଏ ମୋର—ଗଲ ବୁଢ଼ିଙ୍କର ସର୍ବନାଶ !—ସେମାନେ ମଦ ଅପର କେବଳ ନୋଚାଥାଅନ୍ତେ, ଏତେବେଳକୁ ସବୁ କଥା ପ୍ରକାଶ କର ଦେଇସାରନ୍ତିଣି ପରା ।

ଜଥରୁସ୍ତ—ଦେଖ, କେତେ କଷ୍ଟ ରୁ—ଅନେଶ ଆଙ୍କ ହୋଇ ଖେଳିବାଟା ବି ସେମାନଙ୍କର ସହ୍ୟ ହେଲ ନାହିଁ ।

କମଳା—ଈଶ୍ୱର ଏକା ଯା' କରନ୍ତି, ମଙ୍ଗଳ ପାଇଁ !—ସେ ଖେଲ ଭଙ୍ଗି ନ ଥିଲେ କ ଆଜ ଅମେ ଏ'ଖେଳରେ ମାତଥା'ନ୍ତୁ ?

ଜଥରୁସ୍ତ—ହଁ, ତା' ଠିକ୍

କମଳା—ବର୍ତ୍ତିମାନ ଯାଅ, ରାତି ଅନେକ ହେଇଗଲାଣି—ମା ଖୋଜି ପାରନ୍ତି ।

ଜଥରୁସ୍ତ—ଏତେ ଚଞ୍ଚଳ ଚାଲିଯିବି, ବଉଳ ?

କମଳା—ବର୍ତ୍ତିମାନ କାମର ସମସ୍ତ—ଖେଲ ମନେକଲେ କ ଚଳିବ ?

ଜଥରୁସ୍ତ—( ଦୀର୍ଘନିଃଶ୍ୱାସ ଛାଡ଼ି ) ବଉଳ ! ( ଚାଲିଗଲେ )

କମଳା—ତୁମେ ଚନ୍ଦ୍ର—ମୁଁ ସେ ବାମନ, ବଉଳ ।

( ନେପଥ୍ୟେ )—କମଳା !

କମଳା—( ସଚକିତେ ) ମା !

[ ଜଗଦମ୍ବା ପ୍ରବେଶ କର ]

ଜଗଦମ୍ବା କ ଲେ, ଏତେ ରାତିରେ ଏଠି କ'ଣ କରୁଥିଲୁ ?

କମଳା—ପରିସ୍ତା କରିବାକୁ ଆସିଥିଲ ।

ଜଗଦମ୍ବା—ଘରେ କ'ଣ ଜାଗା ନାହିଁ ମେ ତୁ ବାଡ଼ିକୁ ଆସିଥିଲୁ ?

କମଳା—ଆସିଥିଲ ।

ଜଗଦମ୍ବା—କ ଲେ—ତୁ ତ ଦନକୁ ଦନ ଯେତେ ବଡ଼ୁଛୁ, ତେତିକ କ'ଣ ନିର୍ଲଜ୍ଜୀ ହେଉଛୁ ?

କମଳା—ତୋ ପରି ଆଉ ନୁହେଁ, ମା !

ଜଗଦମ୍ବା—( ଚମକିପଡ଼ି ) କଲେ, ଏଣିକ କଣ ଖୁବ୍ ବଡ଼ି ବଡ଼ି କଥା କହୁଛୁ ?—ସେହି ରାଣ୍ଡଟା କଣ ତୋ'ଠି କିଛି ମନ୍ତ୍ର ଝାଡ଼ି ଯାଇଛି କଲେ ?—ଭଲ ଯୋଗରେ

ଗୋଟାଏ ଚଣ୍ଡାଳୀ ଘରେ ପଶିଥିଲା ଯେ, ସବୁ ସତ୍ୟାନାଶ କରିଦେଲା—ସେ ଅଲକ୍ଷଣୀ ଯାଉଛି ନା ପାପ ଯାଉଛି ।

କମଳ—ପାପ ଯାଇ ନାହିଁ, ମା— ! ପାପ ଅସୁଛି—ମା ! ତୁ ଗାଳି ଦେ—ମାର୍—ଯା' କର ପଛକେ, ଯେଉଁଥିରେ ମାଡଛୁ, ତା' ଗୁଡ଼ି ଦେ ।

ଜଗଦମ୍ବା—ଜଲେ, ମୁଁ କେଉଁଥିରେ ମାଡଛୁ ?—କଣ ଗୁଡ଼ିଦେବ ? ଗ୍ରେଟ ମୁହଁରେ ବଡ଼ କଥା—କିଛି ନ କହିଲାରୁ ମୁଣ୍ଡରେ ବଢ଼ୁଛୁ । ରହ, କାଲି ତୋ' ବାପାକୁ କହି ତୋତେ ମାଡ଼ ଖୁଆଉଛି, ଉପରେ ତୁ କଥା ମାନୁନାହୁଁ—ଏକୁଟିଆ ଘରରେ ଦାଣ୍ଡକୁ ଆସୁଛୁ ।

କମଳା—( ସ୍ୱଗତଃ ) ମନ କଥା ପ୍ରକାଶ କରି ବଡ଼ ଭୁଲ କରିଛି । ( ପ୍ରକାଶ୍ୟେ ) ମା ! ମୋତେ କ୍ଷମାକର, ଆଉ ମୁଁ ଘର ବାହାରକୁ ଅସିବ ନାହିଁ । କି ତୋ କଥା ଏଡ଼ିବ ନାହିଁ ।

ଜଗଦମ୍ବା—ଚାଲ, ଭିତରକୁ ଚାଲ ! ( କମଳା ଚାଲିଗଲେ ) କମଳା ଜଣେ କିଛି ଜାଣିଛି କିରେ ପାଉଛୁ ?—ତା'କୁ ଏଥର ଜଗିରହି କାମ କରିବାକୁ ହେବ । କାହିଁ, ଗୋବର୍ଦ୍ଧନ ତ ଏତେବେଳଯାଏ ଅସିଲା ନାହିଁ ? ଅଜି ବି କଣ ନହେଲା ହେଲା ?—ଯାଏଁ, ଦେଖେ ଟୋକୀ ଶୋଇଲଣି କି ନାହିଁ ।

( ଜଗଦମ୍ବା ପ୍ରସ୍ଥାନ କଲେ )

[ ଗୋବର୍ଦ୍ଧନର କଳ୍ପୁଦେବଙ୍କ ଛିନ୍ନମସ୍ତକ ହସ୍ତେ ବେଗେ ପ୍ରବେଶ ]

ଗୋବର୍ଦ୍ଧନ—ନାନି ! ନାନି ! ଜଲ୍‌ଦି ଦ୍ୱାର ଖୋଲ—ବେଗେ ଧାଇଁଆ—କାମ ଅଜି ଫତେ

[ ଜଗଦମ୍ବା—ଦ୍ୱାର ଖୋଲି ବେଗେ ପ୍ରବେଶ କଲେ ]

ଜଗଦମ୍ବା—କିଏ, ଗୋବର୍ଦ୍ଧନ ? ଚୁପ୍‌କର—ଚୁପ୍ କର—କମଳୀଟା ଜଗିଛି ।

ଗୋବର୍ଦ୍ଧନ—ଚୁପ୍ କରିବ ? ନାନି ଚୁପ୍ କରିବ ?—ଦେଖିଲୁ, କ'ଣ ଅଣିଛି ? ହାଃ-ହାଃ-ହାଃ—

ଜଗଦମ୍ବା—( ସଭୟେ ଚାହିଁ ରହିବା )

ଗୋବର୍ଦ୍ଧନ—ଚିହ୍ନି ମୁଣ୍ଡ ତ ନାନି ?

ଜଗଦମ୍ବା—ଏକାବେଳକେ ମୁଣ୍ଡ କାଟି ଅଣିଛୁ !

ଗୋବର୍ଦ୍ଧନ—ହାଃ-ହାଃ-ହାଃ—ଅଶୀବ ନାହିଁ ? ତୁ ଜାଣିଚୁ କିପରି ? ମୁଁ ତା କଣ୍ଠି କିନ୍ତୁ ରହିବ କିପରି ?—ଦେଖିଲୁ ନାନି ! ଏ' ରକ୍ତ, କି ଗରମ ?

[ମୁହଁରେ ରକ୍ତ ଲଗାଇବାକୁ ଗଲା]

ଜଗଦମ୍ବା—ଏ କଣ କରୁଛୁ, ଗୋବରା ?

ଗୋବର୍ଦ୍ଧନ—ନାନି ! ତୁ ଦେଖ ଆଗେ—

ଜଗଦମ୍ବା—(ହାତ ଧରି) ଗୋବରା ! ତୁ ଏପରି ପାଗଳଙ୍କ ଭଳି କାହିଁକି ହେଉଛୁ ?

ଗୋବର୍ଦ୍ଧନ—ହାଃ-ହାଃ-ହାଃ—ପାଗଳ ମୁଁ ? ପାଗଳ ହେଲେ, କାମ ହୁଅନ୍ତା କିପରି ? ଏଥର ଅବଧାନ ଯା କହୁଛୁ, ନିଶ୍ଚୟ ଫଳିବ—ନୁହେଁ ନାନି !

ଜଗଦମ୍ବା—ହଉ, ତୁ ଚାଲ ଆଗେ ମୁଣ୍ଡଟା ଫୋପାଡି ଦେ—ହାତରେ ରକ୍ତ ଲାଗିଛି, ଧୋଇପକା ।

ଗୋବର୍ଦ୍ଧନ—ହାତପାପୁଲିରୁ ରକ୍ତ ଗୁଡ଼ିକ ତ ନାନି ?—ମୁଠାରୁ ମୁଣ୍ଡଟା ଖସିବ ତ ?

ଜଗଦମ୍ବା—ଚାଲ, ବଗିଚା ପୋଖରୀକୁ ଚାଲ—ମୁଁ ସବୁ ଠିକ୍ କରିଦେଉଛି ।

ଗୋବର୍ଦ୍ଧନ—( ସ୍ୱଗତଃ—ଛିନ୍ନମୁଣ୍ଡ ଦେଖି ଦେଖି ) ହାଃ-ହାଃ—ଗୋବର୍ଦ୍ଧନ କେମିତିକା ଶିକାରୀ ? ଯେମିତି 'ଗୋବର୍ଦ୍ଧନ, ଗୋବର୍ଦ୍ଧନ' ବୋଲି ଜଙ୍ଗଲ ଆଡ଼କୁ ଧାଇଁ ଆସିଛି, ସେମିତି ସାଙ୍ଗେ ସାଙ୍ଗେ ପଛଆଡୁ ତରଓ୍ୱାଲରେ ଗୋଟାଏ ଚୋଟରେ ମୁଣ୍ଡ ଅଲଗା, ଗଣ୍ଡି ଅଲଗା ।

ଜଗଦମ୍ବା—କ'ଣ ବକୁଛୁ, ଗୋବରା ? ମରଦପିଲା ହୋଇ ତୋର କଣ ଟିକିଏ ସାହସ ନାହିଁ ? ଦେଖିଲୁ ମୁଁ ମାଇକିନିଅଟା ହୋଇ ମୋର କେଡ଼େ ସାହସ ?

ଗୋବର୍ଦ୍ଧନ—ହାଃ-ହାଃ-ହାଃ—ମୋର ସାହସ ନାହିଁ, ତୋର ସାହସ ଅଛି ? ଦେଖ, ଦେଖ—ମୋର ସାହସର କିପରି ଜ୍ୱଳନ୍ତ ପ୍ରମାଣ—( ମୁଣ୍ଡଟା ଦେଖାଇଲା )

ଜଗଦମ୍ବା—ସେଇଟାକୁ ବାର ବାର ଏତେ ଦେଖାଉଛୁ କାହିଁକି ? —ଘେନି ଫୋପାଡ଼ି ଦେବୁ ।

ଗୋବର୍ଦ୍ଧନ—ଏଇ ତ, ବୁଝିପାରୁନାହୁଁ ? ହାଃ-ହାଃ-ହାଃ —

ଜଗଦମ୍ବା—କେଡ଼େ ଜୋରରେ ହସୁଛୁ, ଗୋବରା ? ମିଜାଜ ଥଣ୍ଡା କର—ଆଉ ଯା ଯା କରିବାକୁ କହିଥିଲି, କରିଛୁ ନା ?

ଗୋବର୍ଦ୍ଧନ—ଠିକ୍ ଠିକ୍ କରିଛି, ନାନି ! କହିଲୁ ଏଥର ମୁଁ ମଜବୁତ୍ କି ନୁହେଁ । ଅବଧାନ କଥା, ସତ କି ମିଛ ?—(ରହି) କିଏସେ ନାନି, ଦେଖିଲୁ ଦେଖିଲୁ—ମୋତେ କଟମଟ କରି ଚାହିଁଛି—ଦାନ୍ତ ରଡ଼ମଡ଼ କରି ଡୋବାଉଛି —

[ ଉପରକୁ ଚାହିଁଲା ]

ଜଗଦମ୍ବା—ଆଉ ତୁ ଏମିତି ଏଠି ଛିଡ଼ା ହ'ନା, ଗୋବର୍ଦ୍ଧ—ଏ ମୁଣ୍ଡ ପୋପାଡ଼ି ନ ଦେଲେ, କିଏ ରକ୍ତ ଧୋଇ ନ ଦେଲେ, ତୋର ମୁଣ୍ଡ ଠିକ୍ ରହିବ ନାହିଁ ।

ଗୋବର୍ଦ୍ଧନ—ଦେଖ୍-ଦେଖ୍, ନାନି । ପୁଣି ଦାନ୍ତ କାମୁଡ଼ୁଛି—ପୁଣି କଟ୍‌ମଟ୍ କରି କରି ଚାହୁଁଛି—

ଜଗଦମ୍ବା—ଆ, ଆ—

[ ଗୋବର୍ଦ୍ଧନ ପୂର୍ବପରି ରହିଥାଏ—ଜଗଦମ୍ବା ହାତଧରି ନେଇଗଲେ । କେତେକ ସୈନିକ ସହିତ ମୁକୁନ୍ଦଙ୍କର ପ୍ରବେଶ ]

୧ମ ସୈନ୍ୟ—ସେନାପତେ ! କ'ଣ ଯେ କହୁଛନ୍ତି, ଆମ୍ଭେମାନେ କିଛି ବୁଝି ପାରୁନାହିଁ ?

ମୁକୁନ୍ଦ—ତୁମ୍ଭମାନଙ୍କୁ ବୁଝାଇବି କ'ଣ ସୈନ୍ୟଗଣ ! ମୁଁ ଯେ ନିଜେ ବୁଝିବାକୁ ଅକ୍ଷମ ।

୨ୟ ସୈନ୍ୟ—ମନ୍ତ୍ରୀ ମହାଶୟ ଖୁନୀ—ଯେ କି ରାଜାଙ୍କର ମଙ୍ଗଳ ସକାଶେ ପ୍ରାଣ-ହତ୍ୟା ପର୍ଯ୍ୟନ୍ତ ସହିପାରନ୍ତି, ସେ ନିଜେ ରାଜ-ହତ୍ୟାକାରୀ ?

ସୈନ୍ୟଗଣ—ଅସମ୍ଭବ !

ମୁକୁନ୍ଦ—ପୃଥିବୀ ପ୍ରଳୟ ହୋଇଗଲେ ମଧ୍ୟ ଅସମ୍ଭବ !

୧ମ ସୈନ୍ୟ—ତେବେ ଆପଣ ରାଜମା'ଙ୍କୁ ସ୍ୱବଚନ୍ତ ଆଦେଶ ଦେବାକୁ ଅନୁରୋଧ କରୁନାହାନ୍ତି କାହିଁକି ?

ମୁକୁନ୍ଦ—ତାହା କ'ଣ ଶୁଣୁଛ ? ମୁଁ-ତର୍କ ମଧ୍ୟ କରିବାକୁ ପାଶ୍ଚାତ୍‌ପଦ ହୋଇନାହିଁ—ଶେଷକୁ ଯେଉଁ ପ୍ରମାଣ ସେ ଦେଖାଇଲେ—

୨ୟ ସୈନ୍ୟ—ଆମ୍ଭେମାନେ ଦେଖିଛୁ ପ୍ରଭୋ ! ତଥାପି କିନ୍ତୁ ବିଶ୍ୱାସ ହେଉନାହିଁ ।

ମୁକୁନ୍ଦ—ଘଟନା ଯେପରି, ସେଥିରେ ସନ୍ଦେହ ହୋଇପାରେ । ଶୁଣ—ଦେଖ, ସୈନ୍ୟଗଣ ଧର୍ମର ଜୟ ସନାତନ—ସୁତରାଂ ଆମ୍ଭେମାନେ ରାଜାଦେଶ ଅବଜ୍ଞା କରିବା କାହିଁକି ?

୧ମ ସୈନ୍ୟ—ମନ୍ତ୍ରୀମହାଶୟ ମଧ୍ୟ କର୍ତ୍ତବ୍ୟ-ଚ୍ୟୁତିରେ ବିରକ୍ତ ହୁଅନ୍ତି ।

ମୁକୁନ୍ଦ—ତାକ, ଅଉ ବିଳମ୍ବ କରିବା ଉଚିତ ନୁହେଁ ।

୨ୟ ସୈନ୍ୟ—ଦ୍ୱାର ଖୋଲ ! ଦ୍ୱାର ଖୋଲ ।

( ନେପଥ୍ୟେ )—କିଏ ତୁମ୍ଭେ ?

ମୁକୁନ୍ଦ—ଏ'ତ କମଳାର କଣ୍ଠସ୍ୱର ! କିଏ ଭଉଣୀ ?

( ନେପଥ୍ୟେ )—ହଁ, ମକୁଭାଇ କି ?

କମଳା—( ଦ୍ୱାରଖୋଲି ) ଏତେ ରାତିରେ କୁଆଡ଼େ ଭାଇ ?

କପିଳେନ୍ଦ୍ର – ନା ମନ୍ତ୍ରୀଭାଇ, ମୁଁ ତୁମ୍ଭର ସେହି କଥା !

ଗୋବିନ୍ଦ—ଏହି ଯେ—ଏହି ଯେ ମୋର ଭାଇ—ଆସ, ଆସ ଭାଇ ! ମୁହୂର୍ତ୍ତିକ ପାଇଁ ରାଜା-ପ୍ରଜା ଭାବ—ଦଣ୍ଡଦାତା-ଅପରାଧୀ ଭାବ ଭୁଲିଯାଇ ଏ ତାପିତ ଅଙ୍ଗ ଶୀତଳ କର—ଏ ତୃଷିତ ପ୍ରାଣ ତୃପ୍ତ କର !

କପିଳେନ୍ଦ୍ର—(ଆଲିଙ୍ଗନ କରିବାକୁ ଯାଇ) ରକ୍ଷି ! ଭାଇଙ୍କର ବନ୍ଧନ ମୋଚନ କରିଦେ !

ଗୋବିନ୍ଦ—ନା, ଭାଇ । ରାଜକାର୍ଯ୍ୟ ଆଜ୍ଞାର ସୀମା ଏତେଦୂର ଲଙ୍ଘନ କରିବା ଉଚିତ ନୁହେଁ । କୁହ କଥା, ମା କାହାନ୍ତି ?

କପିଳେନ୍ଦ୍ର—(କ୍ରନ୍ଦନ କରିବା)

ଗୋବିନ୍ଦ—ବୁଝିଛି ଭାଇ, ଏ ଅଧମ ସନ୍ତାନ-ପ୍ରତି ମା'ଙ୍କର କରୁଣା ହେଲା ନାହିଁ—ହାୟ ! ମୃତ୍ୟୁପୂର୍ବେ ଥରେ ମାତୃ-ଦର୍ଶନସୁଖ ସୁଦ୍ଧା ଏ' ଦୀନ-ଭାଗ୍ୟରେ ଘଟିଲା ନାହିଁ !

[ ଦୀର୍ଘନିଃଶ୍ୱାସ ତ୍ୟାଗ କଲେ ]

ମୁକୁନ୍ଦ—ମହାରାଜ ! ମା ଡାକୁଛନ୍ତି ।

କପିଳେନ୍ଦ୍ର—କୁହ, ସେନାପତେ !

ଗୋବିନ୍ଦ—ନା, ଭାଇ ! ମାତୃ ଆଜ୍ଞା ଲଙ୍ଘନ କରିବା ଉଚିତ ନୁହେଁ ।—ମା'ଙ୍କୁ ଏତିକି କହିଦେବ, ଭାଇ ମୋର ମୃତ୍ୟୁ ପରେ ଯେମନ୍ତ ସେ ନିଶ୍ଚିନ୍ତ ନ ହୁଅନ୍ତି, ପ୍ରକୃତ ହତ୍ୟାକାରୀକୁ ଧରିବାକୁ ଯତ୍ନବତୀ ହୁଅନ୍ତି; ଏଥିପାଇଁ ମା'ଙ୍କ ସଙ୍ଗେ ଦେଖା କରିବାର ବିଶେଷ ପ୍ରୟୋଜନ ଥିଲା ।

କପିଳେନ୍ଦ୍ର—କୁହ ମନ୍ତ୍ରୀଭାଇ ! ପ୍ରକୃତରେ କିଏ ହତ୍ୟାକାରୀ ?

ଗୋବିନ୍ଦ—କିପରି ଜାଣିବି ? ଅନୁସନ୍ଧାନ କରିବାର ଅବସର ପାଇଥିଲେ ଅବଶ୍ୟ ଆବିଷ୍କାର କରିଥାନ୍ତି ।

କପିଳେନ୍ଦ୍ର—ଯାହାହେଉ ଭାଇ—ଗୋବର୍ଦ୍ଧନ ଉପରେ ବର୍ତ୍ତମାନ କାହିଁକି ମୋର ପୂର୍ଣ୍ଣ ସନ୍ଦେହ ହେଉଛି !

ଗୋବିନ୍ଦ—ପ୍ରମାଣ କିଛି ମିଳିନାହିଁ । ଗୁଡ଼, ମୋ ପ୍ରତି ବିଗ୍ରହ ଠିକ୍ ହୋଇଛି । ମୁଁ ବିଗ୍ରହକ ହୋଇଥିଲେ ମଧ୍ୟ ଏହା ହିଁ କରିଥାନ୍ତି—ତେବେ—

କପିଳେନ୍ଦ୍ର—ତେବେ କଣ, ମନ୍ତ୍ରୀଭାଇ ?

ଗୋବିନ୍ଦ—ସମ୍ୟକ୍ ଅନୁସନ୍ଧାନ ହେବା ପୂର୍ବରୁ କିମ୍ବା ରହସ୍ୟଭେଦ ସମ୍ପୂର୍ଣ୍ଣ ନ ହେବା ପୂର୍ବରୁ ଦଣ୍ଡାଦେଶ ଦେବାଟା ଉଚିତ ହୋଇ ନାହିଁ, ବିଶେଷତଃ ମୃତ୍ୟୁଦଣ୍ଡ ।

କପିଳେନ୍ଦ୍ର—ମୁଁ କଣ ରହିତ କରି ପାରିବି ନାହିଁ ?

[ ଜନୈକ ସୈନିକ ପ୍ରବେଶ କରି ]

ସୈନିକ—ମହାରାଜ ! ରାଣୀମା'ଙ୍କ କଡ଼ା ହୁକୁମ—ଆପଣ ଆଉ ଟିକେମାତ୍ର ବିଳମ୍ବ କରି ପାରିବେ ନାହିଁ ।

ଗୋବିନ୍ଦ—ଯାଅ, ଭାଇ ! ଆଜ୍ଞା ଲଂଘନ କର ନାହିଁ—ମୋର ଆଶୀର୍ବାଦ ଗ୍ରହଣ କର—ମା'ଙ୍କୁ ପ୍ରଣାମ ଜଣାଇ ଦିଅ—କମଳା, ନା ଥାଉ ।

କଥରୁଦ୍ର—କମଳାକୁ ଦେଖିବ କି ମନ୍ତ୍ରୀଭାଇ ?

ଗୋବିନ୍ଦ—ପ୍ରୟୋଜନ ନାହିଁ—ତୁମର ଦୃଷ୍ଟି ଥିଲେ ହିଁ ହେଲା ।

କଥରୁଦ୍ର—ଭାଇ—(ଦୀର୍ଘନିଃଶ୍ୱାସ ତ୍ୟାଗ କଲେ)

ଗୋବିନ୍ଦ—ଯାଅ ଭାଇ, ଆଉ ବିଳମ୍ବ କର ନାହିଁ ।

କଥରୁଦ୍ର—ଆଶ୍ଚର୍ଯ୍ୟ, ମନ୍ତ୍ରୀଭାଇ ! ଏତେବଡ଼ ବିପଦରେ ପଡ଼ି, କାଲି ମୃତ୍ୟୁ ଜାଣି ହୁଦ୍ଧା ଏତେଦୂର ସ୍ଥିରମତି ତୁମ୍ଭେ !

ଗୋବିନ୍ଦ—ଭାଇ ! ବିପଦ ଓ ମୃତ୍ୟୁ ବିରୁଦ୍ଧରେ ବୁଦ୍ଧି ପରୀକ୍ଷିତ ।—ସ୍ଥିର ହେବ ମୃତ୍ୟୁ ଓ ବିପଦ—ସେଇଥିପାଇଁ ଏ ବୁଦ୍ଧର କେତେ ଦୁଃଖ ନାହିଁ—ତେତେ ଚିନ୍ତା ନାହିଁ । ଯେତେ ଦୁଃଖ—ଯେତେ ଚିନ୍ତା, ତାର କୋଳରେ ପିଠିରେ ମଣିଷ କରି କଳ୍ପିତ୍ର ଦେବ ପାଇଁ । ହାଏ, କଳ୍ପିତ୍ରଦେବ !

[ ଅନ୍ୟ ଏକ ସୈନ୍ୟର ପ୍ରବେଶ ]

ସୈନିକ—ମହାରାଜ ! ଶୀଘ୍ର ଆସନ୍ତୁ ।

ଗୋବିନ୍ଦ—(ଆଖି ଢାଙ୍କି) ଯାଅ ଭାଇ ! ମାତୃ-ଆଜ୍ଞା ଅଉ ଲଂଘନ କରନାହିଁ ।—ହେ ଈଶ୍ୱର ! ଏହି ଅନାଥ ରାଜ-ବଂଶରେ ଆଉ ଯେପରି କୌଣସି ବିପଦ ନ ଘଟାଅ—ଏହି ରାଜ-ବଂଶଧରଙ୍କୁ ଯେପରି ଦୀର୍ଘାୟୁ ଓ ଶକ୍ତିମାନ କର !—ଯାଅ ଭାଇ—ଦ୍ୱାର ବନ୍ଦକର, ରକ୍ଷୀ ! (ପ୍ରସ୍ଥାନ କଲେ)

କଥରୁଦ୍ର—ସେନାପତେ ! ମନ୍ତ୍ରୀଭାଇ କଦାପି ଦୋଷୀ ନୁହନ୍ତି ।

[ ରାଣୀ ପ୍ରବେଶ କଲେ ]

ରାଣୀ—ଆ, କଥ ! ତୋତେ କେହି ବିଚାର କରିବାକୁ କହୁନାହିଁ ।

କଥ—ମା ! ମା ! (ମା କୋଳରେ ମୁହଁକୁ ଲୁଚାଇଲେ)

ରାଣୀ—ଦେଖ, ସେନାପତେ ! କାଲି ଅତି ପ୍ରତ୍ୟୁଷରେ ଯେପରି କାର୍ଯ୍ୟ ଶେଷ ହୁଏ !

କଥ—ମା ! ମା ! ଅଉ କଟ୍ଟିଦନ ପାଇଁ ସେ ଦଣ୍ଡ ରହିତ କରନ୍ତୁ—ଥରେ ଭଲକରି ଅନୁସନ୍ଧାନ କରନ୍ତୁ । (କାନ୍ଦି ପକାଇଲେ)

ରାଣୀ—ଆ, କଥ ! ଏଡ଼େ କୋମଳ ତୁ ? ଶିକ୍ଷା କର, ରାଜା ହେଲେ କପଟ ପାଷାଣ, କଠିନ ହେବାକୁ ହୁଏ ।

[ କଥ ଓ ରାଣୀ ଚାଲିଗଲେ ]

ମୁକୁନ୍ଦ—ହାୟ ! ଯେ ମୋର ଆଶ୍ରୟଦାତା—ଯେ ମୋର ଉନ୍ନତିର ଏକମାତ୍ର କାରଣ, ତାଙ୍କୁ କାଲି, ନିଜ ସମ୍ମୁଖରେ, ନିଜହସ୍ତରେ, ଏକ ପ୍ରକାର ବଧ କରିବାକୁ ହେବ ! —ଓଃ ! କର୍ତ୍ତବ୍ୟର କି କଠୋର ଶାସନ ! (ପ୍ରସ୍ଥାନ କଲେ)

[ ରକ୍ଷି ପହରା ଦେଉଥିବା ]

—o—

ଚତୁର୍ଥ ଦୃଶ୍ୟ :—

(କାରାଗାର ନିକଟବର୍ତ୍ତୀ ସ୍ଥାନ)

[ ଗୋବର୍ଦ୍ଧନ ପ୍ରବେଶ କରି ]

ଗୋବର୍ଦ୍ଧନ—କାହିଁ ? ଭେଣେଇଙ୍କର ତ କିଛି ପରିବର୍ତ୍ତନ ଦେଖିଲି ନାହିଁ ?—କିଏ କରିବ ? ବର୍ତ୍ତମାନ ତାଙ୍କୁ ରକ୍ଷା କରୁଛି ବା କିପରି ? ମୁକ୍ତ କରିଦେବ ? ( ଭାବି ) କିନ୍ତୁ ଯେପରି ଦେଖୁଛି—ହେଉପରି କଲେ, ସେ ବି ରକ୍ଷା ପାଇବେ ନାହିଁ କି ମୁଁ ବି ନୁହେଁ, କି ନାନୀ ବି ନୁହେଁ । —ତେବେ କରୁଛି କିଏ ?

[ ଦାସୀ ପ୍ରବେଶ କରି ]

ଦାସୀ—କି, ତୁମେ ଏଠି ? ମୁଁ ତୁମକୁ ଖୋଜି ଖୋଜି ହଇରାଣ ହୋଇ ଗଲିଣି—ଭଲ ନାଗର ଏକା .

ଗୋବର୍ଦ୍ଧନ—ଆଚ୍ଛା ପଦ ! ରାଣୀଙ୍କ ପାଖେ ତୋର କି ଖଟଣୀ ?

ଦାସୀ—(ଉଚ୍ଚସ୍ୱରେ) ଖଟଣୀ ?

ଗୋବର୍ଦ୍ଧନ—ଆସ୍ତେ, ଆସ୍ତେ—ଆଚ୍ଛା ଆ, ଏଣିକି ଆ ।

ଦାସୀ—ନା ନା—ତୁମେ ଖାଲି ତୁମର କାମଟା ବେଶ୍ ବାଗେଇ ନେଉଛ ।

ଗୋବର୍ଦ୍ଧନ—ଏତେ ତରବର ହେଉଛୁ କିଆଁ ? ବାହା ହୋଇଗଲେ କିଏ ଏତେ ମଉଜ ଆଉ ରହିବ ?

[ ଆଡ଼ ନୟନରେ ଚାହିଁଲା ]

ଦାସୀ—ସତେ ? ଏପରି ନାଗର ନ ହେଲେ କି ମୋ ମନ ଚୋରି କରିବ ?

ଗୋବର୍ଦ୍ଧନ—ଆ, ଆ—ଏଣିକି ଆ ।

[ ଉଭୟେ ପ୍ରସ୍ଥାନ କଲେ

—o—

ଦ୍ୱିତୀୟ ଦୃଶ୍ୟ :—

( କକ୍ଷ )

[ଜଗଦମ୍ବା ପ୍ରବେଶ କରି ]

ଜଗଦମ୍ବା—କମଳି ! କମଳି ! ( ରୁଦ୍ଧ ଦ୍ୱାରରେ କରାଘାତ କଲେ ) କମଳି ! କମଳି (କାନଡେରି) କାହିଁ ? ସ୍ୱର-ଶବ୍ଦ ତ କିଛି ଶୁଭୁନାହିଁ ? କ'ଣ ହେଲା ? କମଳୀର ମୋର କ'ଣ ହେଲା ? ଗୃହ କାହିଁ, ଗୃହ ଗୋବରା ନେଇ ଯାଇଛି—ଏ ଗୃହରେ କ'ଣ ହେବ ନାହିଁ ? (ନିଜ ଗୃହରେ ଅକୃତକାର୍ଯ୍ୟ ହୋଇ) କମଳି : କମଳି ! — କଣ କରିବି ? କିଏ ଅଛ ? — ଧାଇଁପଡ଼ - କବାଟ ଫିଟାଇ ଦିଅ—କମଳୀର ମୋର କ'ଣ ହେଲା । —କମଳୀର ମୋର କ'ଣ ହେଲା ?

[ ଗୋବର୍ଦ୍ଧନ ପଶିଆସି ]

ଗୋବର୍ଦ୍ଧନ—ଏ କ'ଣ କରୁଛୁ ନାନି ?

ଜଗଦମ୍ବା—ଜଲ୍‌ଦି କବାଟ ଫିଟାରେ ଗୋବରା ! —କମଳୀର ମୋର କ'ଣ ହେଲା ? କମଳୀର—

ଗୋବର୍ଦ୍ଧନ—କମଳୀର ତୋର ହେବ କ'ଣ ?—ଘର ଢେଙ୍କି ତ କୁମ୍ଭୀର ହୋଇଛି, ଆଉ ହେବ କ'ଣ ?

ଜଗଦମ୍ବା—ତାକୁ ମାରି ପକା ନା ରେ ଗୋବରା ! ସେ ପିଲା ମଣିଷ—ମୋତେ ପଚ୍ଛକେ—

ଗୋବର୍ଦ୍ଧନ—କଣ ଗୁଡ଼ାଏ ବକୁଛୁ ନାନି ? କମଳୀକୁ କ'ଣ ମାରି ପକାଉଛୁ ?

ଜଗଦମ୍ବା—କାହିଁ ? ସେ ତ ଡ଼ାକ ଡ଼ାକ ମୋଟେ ଅଜା ଶୁଣୁ ନାହିଁ ?

ଗୋବର୍ଦ୍ଧନ—ମୁଁ ପରା ମନାକରୁଛି—ମୁଁ ନଥିଲା ବେଳେ ଡ଼କାଡ଼କି କରିବୁ ନାହିଁ, କି ସେ ଦ୍ୱାର ମୁହଁକୁ ବି ଯିବନାହିଁ ?

ଜଗଦମ୍ବା—(କାନ୍ଦପକାଇଲେ)

ଗୋବର୍ଦ୍ଧନ—ଦେଖୁଛୁ, ତୁ ସବୁ ସାରିବୁ ନାନି ! —ଆପେ ମରିବୁ ମୋତେ ବି ମାରିବୁ ।

ଜଗଦମ୍ବା—ସେପରି କହ ନା ତୁ ଗୋବରା—ତୋ'ରି ପାଇଁ ତ ଛାତି ମୁଁ ପଥର କରି ବସିଛି । —ସ୍ୱାମୀ ଶୂଳୀକୁ ଯିବାକୁ ବସିଲେଣି, ତେବେ ବି ଦେଖ୍, ସ୍ତ୍ରୀ-ଆଖିରେ ଟୋପିଏ ଲୁହ ନାହିଁ—ଗୋଟିଏ ବୋଲ୍ ଝିଅ, ମାସେ ହେଲା ଅନ୍ଧାର ଘରେ ବନ୍ଦ— ତେବେ ବି ଦେଖ୍ ମା ବସିଖେଳି ଦିନ କଟାଉଛି ।

ଗୋବର୍ଦ୍ଧନ—ଗୋବର୍ଦ୍ଧନ କଣ ଆଉ କଷ୍ଟିନ୍ତ ହୋଇ ବସିଛି ? ତାର ନାନୀ ପାଇଁ—ତାର ଭେଣେଇ ପାଇଁ ସେ କଣ ନ କରିଛି ? ସତୀର କଳଙ୍କ ରଟାଇଛି—ସ୍ୱାମୀର ପ୍ରାଣନାଶ କରାଯାଇଛି—ଆପେ ରାଜ-ହତ୍ୟା କରିଛି—ପ୍ରୟୋଜନ ହେଲେ ଅଦ୍ଭୁତ ଅସାଧ-ସାଧନ କରିବାକୁ ପ୍ରସ୍ତୁତ ଅଛି । —ମୋର ପ୍ରତିଜ୍ଞା, ନାନୀ, ମୁଁ ମରେ ନା ବଞ୍ଚେ, ଦେଖାଇବି, ଅବଧାନ କଥା ସତ କି ମିଛ ! ଭେଣେଇ ରାଜା ହେବ କି ନା—ଆଉ ନାନୀ ମୋର ରାଣୀ ହେବ କି ନା ।

ଜଗଦମ୍ବା—ସେ ରାଜା ରାଣୀ, ଅବଧାନ କଥା—ଚୁଲିକି ଯାଉ । ଗୋବରା ! ତୁ କହ, ତାଙ୍କୁ ବଞ୍ଚାଇ ପାରିବୁ ତ ?

ଗୋବର୍ଦ୍ଧନ—ତୋର ଗୋବରା ଥିବା ଯାଏ ତୁ କିଛି ଚିନ୍ତା କରନା, ନାନୀ—ମୁଁ ସବୁ ଠିକ୍ କରି ଦେଉଛି । ତୁ ଖାଲି ସାହସ କର—ଦମ୍ଭ ଧର ।

ଜଗଦମ୍ବା—କହିଲୁ ଗୋବରା ମୋର ସାହାସ—ମୋର ଦମ୍ଭ କି ଆଉ କାହାରିଠାରେ ଅଛି ? କେଉଁ ନାରୀ, ନାରୀ ହୋଇ ଏତେଦୂର ଦମ୍ଭ ଧରିପାରେ ?

ଗୋବର୍ଦ୍ଧନ—ତେବେ ବେଳେବେଳେ କାହିଁକି ଏତେ ହଲଚଲ ଯାଉ ?

ଜଗଦମ୍ବା—କାହିଁ ? କେତେବେଳେ ?

ଗୋବର୍ଦ୍ଧନ—ଏହି ବର୍ତ୍ତମାନ—'କମଳ, କମଳ' ବୋଲି ଯେତେବେଳେ ଉଚ୍ଛନ୍ନ ହେଉଥିଲୁ ? ମୁଁ କମଳୀକୁ ମାରିବି ବୋଲି ଘରେ ବନ୍ଦକରି ରଖିଛି ? ତାର ଯେପରି ସ୍ୱଭାବ ଦେଖିଛୁ ତ ରାଣୀ ସିନା ତା କଥାରେ କାନ ଦେଲେ ନାହିଁ, ତା ନ ହେଲେ କ'ଣ ସେ ଆଉ ବାକି କିଛି ରଖିଥିଲା ?

ଜଗଦମ୍ବା—ଠିକ୍ କଥା ଗୋବରା, ଠିକ୍ କଥା !

ଗୋବର୍ଦ୍ଧନ—'ଠିକ୍ କଥା ଗୋବରା, ଠିକ୍ କଥା ! ଜାଣୁ ତ, ଏତେ ଡ଼ର ପାଉଥିଲୁ କିଆଁ ?

[ ପଦ୍ମାର ପ୍ରବେଶ ]

ଜଗଦମ୍ବା—ଏ କିଏ, ଗୋବରା ?

ଗୋବର୍ଦ୍ଧନ—ନାନୀ ! ମୋତେ ଭାରି ଭୋକକଲାଣି, ଜଲ୍‌ଦି ଖାଇବାକୁ ଦେ—କମଳୀର ବି ଖାଇବାର ଆଣ—ଯା ଜଲ୍‌ଦି ଯା ।

[ଜଗଦମ୍ବା ପ୍ରସ୍ଥାନ କଲେ ]

ପଦ୍ମା—ନାହିଁ, ମୁଁ ପାରିବି ନାହିଁ ।

ଗୋବର୍ଦ୍ଧନ—ତେବେ ଆସିଲୁ କାହିଁକି ?

ପଦ୍ମା—ମୋତେ ମାଫ୍ କର ।

ଗୋବର୍ଦ୍ଧନ –(ନିରୁତ୍ତର)

ପଦ୍ମା—ଗୋଡ଼ ଧରୁଛି—

ଗୋବର୍ଦ୍ଧନ—(ଗୋଡ଼ରେ ଟେଲିଦେଇ) ଏଇ ପରି ତୋର ପେରେମ ? —

ପଦ୍ମା—ମୋତେ ଯେ ଡର ମାଡ଼ୁଛି ।

ଗୋବର୍ଦ୍ଧନ—ଡର ମାଡ଼ିଲେ ପେରେମ ହୁଏ ନାହିଁ । ଜାଣୁ, ବିଲ୍ୱମଙ୍ଗଳ କରିଥିଲେ କ'ଣ ? ଗୁରୁ ବେଶ୍ୟାଟା ଲାଗି ଶବ ଧରି ନଦୀ ପାର ହୋଇଥିଲେ—ସାପ ଲଞ୍ଜ ଧରି ପାଚେରୀ ଡେଇଁଥିଲେ, ଆଉ ତୁ ମୋ ଲାଗି—ମୁଁ ଯେ ଜଣେ କେତେ ବଡ଼ ଲୋକ ହେବାକୁ ଯାଉଛି—ଏତକ କାମ କରି ପାରିବୁ ନାହିଁ ?

ପଦ୍ମା—ତେବେ ଏହି ଶିଶିଟା ରଖ, ସେହି ଔଷଧ ଗୁଣ୍ଡା ଦିଅ । ସେ ରୋଜ ସଖାଳୁ ଉଠି ପାଣି ପିଅନ୍ତି—ପାଣିରେ ମିଶାଇ ରଖିଥିବି ।

ଗୋବର୍ଦ୍ଧନ—ଏ'ତ ଖୁବ୍ ଭଲ ଉପାୟ ! ସାପ ମରିବ ଅଥଚ ବାଡ଼ି ଭାଙ୍ଗିବ ନାହିଁ । ତୁ ତ ନିଜେ ଜାଣିପାରିବୁ ନାହିଁ ଯେ, ତୁ କଣ କରିଛୁ ? ଶିଶିଟା ବି ଧାଖରେ ଥାଉ ଦରକାର ବେଳେ କର୍ମରେ ଆସିପାରେ ।

ପଦ୍ମା— କିନ୍ତୁ ?

ଗୋବର୍ଦ୍ଧନ—ଫେର୍ କିନ୍ତୁ କ'ଣ ?

ପଦ୍ମା—(ଅଭିମାନ କରିବା)

ଗୋବର୍ଦ୍ଧନ—ଗୁମାନ କର ନା ପ୍ରିୟେ ! ଗୋବର୍ଦ୍ଧନ ଯେ ତୁମର କେଣା ଗୋଲାମ ।

ପଦ୍ମା—(ସୁର୍ କରି) ସତେ କି—

ଗୋବର୍ଦ୍ଧନ—ଆଉ ଆଉ, ବର୍ତ୍ତମାନ ପ୍ରେମର ସମୟ ନୁହେଁ—କାମର ସମୟ—

ପଦ୍ମା—ଠିକ୍ ଠିକ୍—ଦେଖ, ସ୍ୱୟଂରେ ମୁଁ ଖାଲି ଦିନରାତି ତୁମକୁ ବାନ୍ଧି ବସିଥିବି, ଆଉ ଗୀତ ଗାଉଥିବି ।

ଗୋବର୍ଦ୍ଧନ—ଅହ୍ନା ବିଧୁମୁଖି ! ମୋ ପାଇଁ କେତେ ପେରେମ ଜମାଇ ରଖିଛି ।

[ ଚୁମ୍ବନ ଦେବା ]

ପଦ୍ମା— ବନ୍ଧୁ ! ବନ୍ଧୁ ! ଦାସୀକୁ ଏତେ ଭଲ ପାଅନ୍ତି ! —ହାୟ ମୁଁ ଯେ ଏ ପର୍ଯ୍ୟନ୍ତ ବନ୍ଧୁଙ୍କ କାମକରି ପାରିନାହିଁ ।　　　　[ ପ୍ରସ୍ଥାନ କଲା ]

ଗୋବର୍ଦ୍ଧନ—ଅଜା କାଳିଗର ସମ୍ମୁଖରେ ଯେପରି ଦେଖିଲି ମହାରାଜ ଭେଣେଇଙ୍କୁ ମୃତ୍ୟୁଦଣ୍ଡ ଦେବାକୁ ଏକାବେଳକେ ନାମଙ୍ଗ, କେବଳ ରାଣୀଙ୍କ ସକାଶେ କିଛି କରିପାରୁ

ନାହାନ୍ତି । ରାଣୀଙ୍କୁ ନିକାଶ କରିଦେଲେ, ସବୁ ଅଡୁଆ ଛୁଟିଗଲା—ମହାରାଜ ନିଷ୍ଚୟ ଭେଣେଇଙ୍କୁ ଖଲାସ କରିଦେବେ, ନା ଅଙ୍ଗୁର, ରାଗିଯିବେ ?—କାହିଁକି ? ବରଂ ଦୃଢ ବିଶ୍ୱାସ କରିବେ ଯେ ଭେଣେଇ କଳ୍ପିତ ଦେବଙ୍କୁ ହତ୍ୟା କରି ନାହାନ୍ତି ।—ବାଃ ! ବାଃ ! କେମିତିକା ଉପାୟ ? ଗୋବର୍ଦ୍ଧନର କି କମ୍ ସାଫ୍ ମୁଣ୍ଡ ? ନାନି ନାନି—

[ଜଗଦମ୍ବା ପ୍ରବେଶ କରି]

ଜଗଦମ୍ବା—କିରେ, କ'ଣ ?

ଗୋବର୍ଦ୍ଧନ—କାହିଁ, ଖାଇବାର ଆସେ ?

ଜଗଦମ୍ବା—ଏଠାକୁ ଆଣିବି ? ମୁଁ ଯେ ସେ ଘରେ ଜାଗାକରି ସାରିଲିଣି ।

ଗୋବର୍ଦ୍ଧନ—ଆଚ୍ଛା ହଉ, ଚାଲ—ମୁଁ କମଳୀକୁ ନେଇ ଯାଉଛି ।

[ଜଗଦମ୍ବା ଚାଲିଗଲେ ]

[ ଗୋବର୍ଦ୍ଧନ ଦ୍ୱାର ଉନ୍ମୋଚ କଲେ କମଳୀ ଗୋଟିଏ ଶଯ୍ୟା ଉପରେ ଶୋଇଥିଲା ]

ଗୋବର୍ଦ୍ଧନ—କମଳି—କମଳି ! (ରହି) କମଳି ! କମଳୀ ଶୁଣୁନାହିଁ ଯେ (ଦେହରେ ହାତ ଦେଇ) ଦେହ ଥଣ୍ଡା ବୋଧ ହେଉଛି କାହିଁକି ? କମଳି ! କମଳି !—ନାକରେ ଯେ ନିଃଶ୍ୱାସ ନାହିଁ !—କମଳି ! କମଳି—ଏ କଣ ହେଲା ?—ଏ କଣ ହେଲା ?—କମଳି—କମଳି ! ମୁଁ କଅଣ କଲି ? ମୁଁ କଅଣ କଲି ? କମଳି ! କମଳି ! (କୋହରେ) ଓଃ ହୋଃ ହୋଃ ! କମଳି ! କମଳି ! ସତେ କ'ଣ ତୁ ନାହୁଁ ?—ସତେ କଣ ତୁ ନାହୁଁ ? ତୋତେ କଣ ମାରିପକାଇଲି କମଳି ? ତୋତେ—ଓଃ ହୋଃ ! (ଦୃଢ଼ସ୍ୱରେ) ନା—ଏତେବେଳେ କାନ୍ଦିବାର ସମୟ ନୁହେଁ—ଧୈର୍ଯ୍ୟ ଧରିବା ଉଚିତ । (ନେପଥ୍ୟେ) ଗୋବରା ! କମଳୀକୁ ଘେନି ଚାଲିଆ ।

ଗୋବର୍ଦ୍ଧନ—କଅଣ କରିବି ? ନାନୀ ଜାଣିଲେ ତ ଏଣ୍ଟିକି ହାଟ ବସାଇଦେବ—ସବୁ ଭଣ୍ଡୁର ହୋଇଯିବ—କଅଣ କରିବି ?

(ନେପଥ୍ୟେ) ଗୋବରା ! ଡେରି କାହିଁକି କରୁଛୁ ମ ?

କମଳୀ କ'ଣ ଉଠୁନାହିଁ ?—ହଉ ତୁ ଆ, ମୁଁ ଯାଉଛି ।

ଗୋବର୍ଦ୍ଧନ—କ'ଣ କରିବି ? (ଭାବି) ଆଚ୍ଛା, ଆଜି ରାତିକ ସକାସେ ଏକ ଉପାୟ କରେ

[ତାଲା ବନ୍ଦକରି ଗମନ କାଳେ ଜଗଦମ୍ବା ପ୍ରବେଶକଲା]

ଜଗଦମ୍ବା—କମଳୀ କାହିଁ ?

ଗୋବର୍ଦ୍ଧନ—ସେ ଖାଇବ ନାହିଁ, ମନା କଲା ।

ଜଗଦମ୍ବା—ରାଗରେ ତ ସେହିପରି ରୋଜ କହୁଥାଏ ।—ତୁ ଯା, ମୋତେ ଘୃବଟା ଦେ ।

ଗୋବର୍ଦ୍ଧନ—କାହିଁକି ମିଛେ ମିଛେ ତାକୁ ବ୍ୟସ୍ତ କରଉଚୁ ନାନି ! ଆଜି ଆଉ ରାଗ ଫାଗ ନାହିଁ ଯେ—ଖାଇ ସୁନା ଝିଅ ପାଲଟି ଗଲାଣି—

ଜଗଦମ୍ବା—ତେବେ ଆଉ ଘୃବ ବନ୍ଦ କରିବାରେ ଦରକାର କ'ଣ ?

ଗୋବର୍ଦ୍ଧନ—ସେ ନିଜେ କହିଲା, ଘୃବ ବନ୍ଦ କରିବାକୁ ।

ଜଗଦମ୍ବା—କାହିଁକି ?

ଗୋବର୍ଦ୍ଧନ - କେଜାଣି—କହିଲା ତ ? ମୁଁ ବି ତା ସଙ୍ଗେ ବେଶି ଜିଗର କଲି ନାହିଁ—କାହିଁକି ନା ଯେ କହିଲା, "ମାମୁଁ ! କେତେଦିନ ହେଲା ଭଲ ନିଦ ହୋଇ ନାହିଁ, ଆଜି ଟିକଏ ଶୋଇବି—ତୁମେ ବିରକ୍ତ କରନାହିଁ, ମାଆକୁ ବି କହିବ, ବିରକ୍ତ କରିବ ନାହିଁ ।"

ଜଗଦମ୍ବା—ଅଖିଆଟା ଶୋଇଲା—ଆଚ୍ଛା, ତୁ ଆ—ଆଗେ ଖାଇ ସାର      (ଚାଲିଗଲେ)

ଗୋବର୍ଦ୍ଧନ—ଗୃହଟା ତ ଏକ ରକମ କଟିଯିବ ବୋଲି ବୋଧ ହେଉଛି—ତା'ପରେ କରିବ କ'ଣ ?—ହାୟ କମଳା ! ତୋତେ କଣ ମୁଁ ମାରିପକାଇଲି ?

[ ଆକୁଳ ହୋଇ ଉଠିଲେ ]

—o—

ତୃତୀୟ ଦୃଶ୍ୟ :—

( ଆଶ୍ରମ )

[ କାଳ—ରାତ୍ରି । ରଙ୍ଗିଲା ଶୋଇଥିଲା—ସନ୍ନ୍ୟାସୀ ଏକଦୃଷ୍ଟିରେ ଚାହିଁ ବସିଥିଲେ—ବିଦ୍ୟୁତ୍ ଚମକିଲା ]

ସନ୍ନ୍ୟାସୀ—ବିଦ୍ୟୁତ୍ ! ଆହୁରି ଥରେ—ଓଃ, କି ସୁନ୍ଦର !—କି ସୁନ୍ଦର ! ରଙ୍ଗିଲା—

ରଙ୍ଗିଲା—(ଆଖି ମଳୁ ମଳୁ ଉଠି ବସି) ସତେ ତୁମେ ଫେରି ଆସିଛ ?—କାହିଁ ? କାହିଁ ?
(ବଜ୍ରନାଦ) ବାପ୍‌ରେ, କି ଗର୍ଜ୍ଜନ !

ସନ୍ନ୍ୟାସୀ—(ବିଦ୍ୟୁତ୍ ଚମକିଲା) ରଙ୍ଗିଲା !

ରଙ୍ଗିଲା—କିଏ ? ବାବା ?—ମୁଁ ଗୋଟାଏ ଭାରି ଦୁଃସ୍ୱପ୍ନ ଦେଖି ଉଠିବସିଲି, ବାବା ! ଆଜି ଭୀଷଣ ରାତ୍ରି !

ସନ୍ନ୍ୟାସୀ—ଭୀଷଣ ରଙ୍ଗିଲା—ବିଶ୍ୱ ଯେପରି ପ୍ରଳୟ ହେବାକୁ ବସିଛି !

ରଙ୍ଗିଲା—ବାବା ! ଏତେବେଳ ଯାଏ ଯେ ଶୋଇ ନାହାନ୍ତି ?

ସନ୍ନ୍ୟାସୀ—ଆଜି ବିଶ୍ୱମଧ୍ୟରେ କିଏ ସୁପ୍ତ ରଙ୍ଗିଲା ? ସୁପ୍ତ ମଧ୍ୟ ଆଜି ଜାଗ୍ରତ !

[ ବିଦ୍ୟୁତ୍ ଚମକ ଓ ମେଘଗର୍ଜ୍ଜନ ]

ରଙ୍ଗିଲା—ବାପ୍‌ରେ କି ଚମକ—କି ଗର୍ଜ୍ଜନ !

ସନ୍ନ୍ୟାସୀ— ତେ ରଙ୍ଗିଲା—ଏପରି ଭୟଙ୍କର ରାତ୍ରି ମୁଁ ଜୀବନରେ ଆଉ କେବେ ହେଲେ ଦେଖିନାହିଁ, ସନ୍ନ୍ୟାସୀର ପର୍ଯ୍ୟନ୍ତ ଆଜି ଧୈର୍ଯ୍ୟଚ୍ୟୁତି ଘଟିଛି ।

ରଙ୍ଗିଲା—ବାବା ! ବିଶ୍ୱ ତେବେ ଆଜି ନିଶ୍ଚୟ ପ୍ରଳୟ ହେବ ?

ସନ୍ନ୍ୟାସୀ—ରଙ୍ଗିଲା କରୁଣା କଲେ କିନ୍ତୁ ସବୁ ଶାନ୍ତ ହୋଇଯିବ ।

ରଙ୍ଗିଲା—(ସବିସ୍ମୟେ ଚାହିଁ ରହିଲା)

ସନ୍ନ୍ୟାସୀ—ଆଶ୍ଚର୍ଯ୍ୟର କାରଣ କିଛି ନାହିଁ ସୁନ୍ଦରୀ ! ତୁମ୍ଭର ସେହି ମଧୁରେକ୍ଷଣ ପାତନରେ —ତୁମ୍ଭର ସେହି ଅପୂର୍ବ ଯୌବନ-ସୌରଭରେ, ଭସ୍ମୀଭୂତ ମଦନ ପୁନର୍ଜ୍ଜାଗ୍ରତ ହୋଇଛି—ଭୀଷଣ ପ୍ରକୃତି ସାହାଯ୍ୟରେ ଆଜି ସେ ଗର୍ବିତ ଶଙ୍କରର ହୃଦୟ ମଧ୍ୟ ପୁନରଧିକାର କରି ବସିଛି !—ନିରାଶ୍ରୟର ଏକମାତ୍ର ଆଶ୍ରୟ ଅଧୁନା, ତୁମ୍ଭର ସୁକୋମଳାଲିଙ୍ଗନ—ଦରିଦ୍ରର ଏକମାତ୍ର ଭରସା ଅଧୁନା ତୁମ୍ଭର ଅଧରଚୁମ୍ବନ ।

ରଙ୍ଗିଲା—(ସଭୟେ) ବାବା ! ବାବା ! ଏଗୁଡ଼ାକ କ'ଣ ବକୁଛନ୍ତି ?

ସନ୍ନ୍ୟାସୀ—କିନ୍ତୁ ଭୟ କରନା ରଙ୍ଗିଲ ! ଏକେ ଏ ନିର୍ଜନ ଆଶ୍ରମ, ତହିଁପରେ ପ୍ରକୃତ ଦେବୀ ଅନୁଗ୍ରହ କରି ଯବନିକା ତାଙ୍କୁ ଦେଇଛନ୍ତି—ସଂସାରବାସୀର କଥା ତ ଦୂରେ, ଅନ୍ତରୀକ୍ଷବାସୀ ପକ୍ଷେ ମଧ୍ୟ ଆମ୍ଭମାନଙ୍କର ଗୁପ୍ତ-ରହସ୍ୟ ଭେଦ କରିବା ଦୁଷ୍କର ।

ରଙ୍ଗିଲ (ସକାତରେ) ବାବା ! ଏହି ପାପ କଳଙ୍କର ତୃପ୍ତି ଲାଗି କ'ଣ ଜୀବନ-ଦାନ କରିଥିଲେ ? ଏହି ପାଶବିକ ପ୍ରବୃତ୍ତି ଚରିତାର୍ଥ ଲାଗି କ'ଣ 'ଆତ୍ମହତ୍ୟା' ମହାପାପ ବୋଲି ବୁଝାଇଥିଲେ ?—ଯେତେବେଳେ ମୁଁ ତତ୍ତ୍ୱ ଅଜ୍ଞାନ ହୋଇଥିଲି—ମୋର କୌଣସି ଜ୍ୱାଳା ଯନ୍ତ୍ରଣା ନ ଥିଲା—ପରମଶାନ୍ତି ଅନୁଭବ କରୁଥିଲି, ତେତେବେଳେ ଆପଣ କି ଶକ୍ତି ସଞ୍ଚାର କଲେ ଯେ ମୋର ପୁନର୍ଜୀବନ ଲାଭ ହେଲା—ନିର୍ବାପିତ ଅଗ୍ନି ଯେମନ୍ତ ପୁନର୍ବାର ହୁ-ହୁ କରି ଜଳିଉଠିଲା—ମାତ୍ର ଆପଣଙ୍କର ସାରଗର୍ଭ ବଚନ-ସୁଧାରେ ତାହା ପ୍ରଶମିତ ହୋଇଯାଇଥିଲା; ସୁତରାଂ ମନେ କରିଥିଲି, ଉଷର ଭୂମିରେ ଉତ୍ସରୁଦ୍ଧ ଏଠାରେ ମଧ୍ୟ ପ୍ରକୃତ ଶାନ୍ତି ମିଳେ । କିନ୍ତୁ ଆଜି ଦେଖୁଛି, ଭୁଲ ଧାରଣା—ଏ' ସଂସାରରେ ଶାନ୍ତି ଅସମ୍ଭବ—କେବଳ ଶାନ୍ତି ପରପାରରେ !—ଅଭାଗୀକୁ ବିଦାୟ ଦିଅନ୍ତୁ ବାବା !　　　　　　　　　　[ ଗମନୋଦ୍ୟତ ହେଲେ ]

ସନ୍ନ୍ୟାସୀ—ଏ' ଭୀଷଣ ସମୟରେ କେଉଁଠାକୁ ବାହାରିଲ ରଙ୍ଗିଲ ?

ରଙ୍ଗିଲ—ଯେଉଁଠାରୁ ଏ ଅଭାଗୀକୁ ଆଣିଥିଲେ ବାବା !

[ ରଙ୍ଗିଲର ଗମନ ପଥରେ ବାଧାଦେଇ ]

ସନ୍ନ୍ୟାସୀ—ନା ରଙ୍ଗିଲ ! ନିଷ୍ଠୁର ହୁଅ ନା ! ଶୁଣ ସୁନ୍ଦରୀ ! ଆଜି ପର୍ଯ୍ୟନ୍ତ ତୁମ୍ଭଙ୍କୁ ସାମାନ୍ୟ ପର୍ଣ୍ଣକୁଟୀରରେ ଆଶ୍ରୟ ଦେଉଥିଲି, ଏଣିକି ହୃଦୟ ମନ୍ଦିରରେ ତୁମ୍ଭର ମଣିମୟ ସିଂହାସନ—ସାମାନ୍ୟ ବନ୍ୟ ଫଳମୂଳ ଆହାର କରିବାକୁ ଦେଉଥିଲି, ଏଣିକି ପ୍ରେମ-ପୀୟୂଷ ତୁମ୍ଭର ନିତ୍ୟ ଭୋଜନ ।

ରଙ୍ଗିଲ—ବାବା ! ବାବା !

ସନ୍ନ୍ୟାସୀ—ନା ସୁନ୍ଦରୀ ! ଆଉ ସେପରି ସମ୍ବୋଧନ କର ନାହିଁ ! ଆଜିକୁ ଦଶବର୍ଷ ଯାବତ୍ ନିର୍ଜନ କୁଟୀରରେ ବାସ କରି ବନ୍ୟ ଫଳ ମୂଳ ଭକ୍ଷଣ କରି—ଝରଣାର ଜଳ ପାନ କରି ଯେଉଁ ଶାନ୍ତି ଅନ୍ୱେଷଣ କରୁଥିଲି, ତାହାର ସନ୍ଧାନ ନିମିଷିକରେ ଆଜି ପାଇଅଛି —ତାହା ତୁମ୍ଭର ସେହି ବିମ୍ବାଧରରେ—ତୁମ୍ଭର ସେହି ସୁକୋମଳ ଆଲିଙ୍ଗନରେ ଲୁକ୍କାୟିତ । ସେହି ଆଲିଙ୍ଗନ ସୁଖ—ସେହି ଅଧର-ସୁଧା ଦାନ କରି ଦୀନକୁ

ଦସ୍ୟାକର ସୁନ୍ଦରୀ ! ଅକାଞ୍ଚନର ' କାଞ୍ଚନ ପୂର୍ତ୍ତିକର ସୁନ୍ଦରୀ !

[ ଅବନତ ହେଲେ ]

ରଙ୍ଗିଲି—ବାବା ! ବାବା !—ନା, ଅ.ଉ ଏ ସ୍ଥାନରେ ରହିବା ଉଚତ ନୁହେଁ ।

[ ପଳାୟନୋଦ୍ୟତା ]

ସନ୍ନ୍ୟାସୀ—ନା ସୁନ୍ଦରୀ ! (ଧରଲେ)

ରଙ୍ଗିଲି—ଭଣ୍ଡ ! (ଛଡ଼ାଇବାକୁ ଚେଷ୍ଟାକଲି)

ସନ୍ନ୍ୟାସୀ—ବୃଥା ଚେଷ୍ଟା ସୁନ୍ଦରୀ !

[ ଆକର୍ଷଣ କରବା ବେଳେ ଘନ ଘନ ବଦ୍ୟୁତ୍
ଚମକଲା ଓ ମେଘଗର୍ଜନ ହେଲା ]

ରଙ୍ଗିଲି—ଜ୍ୱଳ, ଜ୍ୱଳ, ବଦ୍ୟୁତ୍ ! ଦାବାଗ୍ନି ସମ ଜ୍ୱଳି ଉଠ—ଗର୍ଜ, ଗର୍ଜ ବଜ୍ର ! ଗ୍ରହ ଘର୍ଷଣ ନନାଦରେ ଗର୍ଜିଉଠ—ବର୍ଷ, ବର୍ଷ ବାର ! ପ୍ରଳୟ ଧାରରେ ବର୍ଷ ଯାଅ—ପୃଥିବୀ ରସାତଳକୁ ଚାଲିଯାଉ—ବଶ୍ୱ ବାରଧି ମଧ୍ୟସ୍ଥ ପୋତ ସମ କମ୍ପି ଉଠୁ—ନର୍ଜୀବ ସଜୀବ ହୋଇ ଧାଇଁଆସୁ !—ଗୋଟିଏ ଅବଳା, ନାରୀ ଆଜ ଭଣ୍ଡ ତପସ୍ୱୀ କବଳରେ, ଗୋଟାଏ ନରରାକ୍ଷସ କବଳରେ—

ସନ୍ନ୍ୟାସୀ—ବୃଥା ଅ.ସ୍ଫାଳନ ସୁନ୍ଦରୀ !        (ଧାରଣ କରବା)

[ ବୀରେନ୍ଦ୍ର ବେଗେ ପ୍ରବେଶ କର ]

ବୀରେନ୍ଦ୍ର—ବୃଥା ଆସ୍ଫାଳନ ନୁହେଁ, ରାକ୍ଷସ !

ଅର୍ଜୁନ ପ୍ରବେଶ କର ]

ଅର୍ଜୁନ—କେଉଁଠି ତୁମ୍ଭେ, ଭାଇ ?—ଓଃ, କ ଅନ୍ଧାର । ବାହାରେ ଯେପର, ଭିତରେ ବ ସେହିପର ।

ରଙ୍ଗିଲି—(ଚମକ କାହାର କଣ୍ଠସ୍ୱର ଏ' ?

ସନ୍ନ୍ୟାସୀ—କଏ ତୁମ୍ଭେମାନେ ? ଏ' ସନ୍ନ୍ୟାସୀର ଆଶ୍ରମ ।

ଅର୍ଜୁନ—ଏ' ସନ୍ନ୍ୟାସୀର ଆଶ୍ରମ ଭାଇ ! ପ୍ରଣାମ କର—ପ୍ରଣାମ କର ।

[ ଲମ୍ବହୋଇ ପ୍ରଣାମ କଲେ ]

ରଙ୍ଗିଲି—(ସ୍ୱଗତଃ) ଠିକ୍ ସେହିପର ସ୍ୱର ତ !

ବୀରେନ୍ଦ୍ର—କହ ଭଣ୍ଡ, କାହା ଉପରେ ଅତ୍ୟାଚାର କରୁଥିଲୁ ?—କେଉଁଠି ତୁମ୍ଭେ, ମା ?

ଅର୍ଜୁନ—ଭାଇ ! ତୁମେ କଣ ପାଗଳ ହେଲଣି ? ସନ୍ନ୍ୟାସୀର ଆଶ୍ରମରେ ସ୍ତ୍ରୀଲୋକ ଆସିବ କାହୁଁ ?

ରଙ୍ଗିଲି—(ସ୍ୱଗତଃ) ଠିକ୍, ଠିକ୍ ସେହିପରି ସ୍ୱର—କଥାରେ ମଧ୍ୟ ଠିକ୍ ସେହିପରି ସରଳତା ।

ସନ୍ୟାସୀ—ଆଶ୍ରମରେ ତ ଅନ୍ୟ ସ୍ତ୍ରୀଲୋକ କେହି ନାହାନ୍ତି, କେବଳ ମାତାଜୀ ସେଠି ରହିଆ ହୋଇଛନ୍ତି ।

ଅର୍ଜ୍ଜୁନ—ମାତାଜୀ ବି ଅଛନ୍ତି ? ପ୍ରଣାମ କର, ପ୍ରଣାମ କର—ଗାର୍ହସ୍ଥ୍ୟ ପରେ ଏମାନେ ସନ୍ନ୍ୟାସ ଗ୍ରହଣ କରିଛନ୍ତି ।

[ ପ୍ରଣାମ କରିବାକୁ ଯିବାବେଳେ ]

ରଙ୍ଗିଲି—ମିଥ୍ୟା କଥା । ମୁଁ ଗୋଟିଏ ଅବଳା ବାଳିକା—ହିନ୍ଦୁ ବିଧବା-ନାରୀ ।

[ ସନ୍ତର୍ପଣେ ସନ୍ନ୍ୟାସୀ ପ୍ରସ୍ଥାନ କଲା ]

ବୀରେନ୍ଦ୍ର—ତେବେ ରେ ଭଣ୍ଡ ! ଭାଇ ! —ଶୀଘ୍ର ଚକମକିଟା ଦିଅ ତ ?

ଅର୍ଜ୍ଜୁନ— (ଚକମକି ଦେଲେ) ନିଅ ଭାଇ— ସନ୍ନ୍ୟାସୀ ହୋଇ ମିଛ କଥା !—ପୁଣି ଏପରି କୁତ୍ସିତାଚରଣ !

ରଙ୍ଗିଲି—(ସ୍ୱଗତଃ) ଠିକ୍ ସେହିପରି କଥାର ଠାଣି ତ !

ବୀରେନ୍ଦ୍ର—(ନିଆଁ ଲଗାଇ ଦେଇ) କାହିଁ ସେ ଭଣ୍ଡ ? କେଉଁ ଠାକୁ ଗଲା ? ଭାଇ ! ତୁମେ ବାଳିକାଟିକୁ ରକ୍ଷାକର, ମୁଁ ସେହି ପାପିଷ୍ଠକୁ ଏହିକ୍ଷଣି ବାନ୍ଧି ଘେନି ଆସୁଛି ।

(ସବେଗେ ପ୍ରସ୍ଥାନ)

ଅର୍ଜ୍ଜୁନ—ପୁଣି ବର୍ଷା ଆରମ୍ଭ ହୋଇଛି—ବେଶୀ ଭିଜ ନା ଭାଇ—ଜ୍ୱର ହୋଇପାରେ ।

ରଙ୍ଗିଲି—(କ୍ଷୀଣ ସ୍ୱରରେ) କିଏ ଆପଣ ? (ବିଦ୍ୟୁତାଲୋକରେ ଦେଖି ସ୍ୱଗତଃ )ସେ କାହିଁକି ହେବେ ? ସ୍ୱର୍ଗର ଦେବତା ମର୍ତ୍ତ୍ୟକୁ ଆସିବେ କିପରି ?

ଅର୍ଜ୍ଜୁନ—କିଛି ଭୟ କର ନା ବାଳିକା—ମୁଁ ଅଛି ।

ରଙ୍ଗିଲି—(ସ୍ୱଗତଃ) ମୁଁ ସ୍ୱପ୍ନ ଦେଖୁ ନାହିଁ ତ ? (ପ୍ରକାଶ୍ୟେ) ମହାଶୟ !

ଅର୍ଜ୍ଜୁନ—କଣ କହୁଁ ବାଳିକା ?—ଘରକୁ ଯିବ ? ଟିକିଏ ରୁହ—ଭାଇ ଆସି ଯାଆନ୍ତୁ ।

ରଙ୍ଗିଲି—କିଏ ତୁମ୍ଭେ ମହାଶୟ, ଘରର ମାୟା ପୁଣି ଜନ୍ମାଇ ଦେଉଛ ? କିନ୍ତୁ ଏ ଅଭାଗୀର—

ଅର୍ଜ୍ଜୁନ—କାହିଁକି ବାଳିକା ? ତୁମ୍ଭର କ'ଣ କେହି ନାହିଁ ।

ରଙ୍ଗିଲି—କେହି ନାହିଁ କାହିଁକି ? କିନ୍ତୁ ଯେ ଅବଳାର ଏକମାତ୍ର ବଳ—ସଂସାର ଏକମାତ୍ର ଅବଲମ୍ବନ, ସେ ଯେ—(କାନ୍ଦିଲା)

ଅର୍ଜ୍ଜୁନ—ବୁଝିଛି ବାଳିକା । (ସ୍ୱଗତଃ) ଆହା ! ରଙ୍ଗିଲି ମଧ୍ୟ ଏହିପରି କାନ୍ଦୁଥିବ ।

(ପ୍ରକାଶ୍ୟେ) କାନ୍ଦ ନା ବାଳିକା ! ଏ ଦେହ ତ କଳ ମାଟି ଛଡ଼ା ଆଉ କିଛି ନୁହେଁ ! ଅଚ୍ଛା, ବାଳିକା ! ତୁମ୍ଭର ସ୍ୱାମୀଙ୍କର କି ରୋଗ ହୋଇଥିଲା ?

ରଙ୍ଗିଲ—ରୋଗ ?—ଏହି ଅଭାଗୀ ଯେ ତାଙ୍କର ରୋଗ ।

ଅର୍ଜ୍ଜୁନ—କିଣ କହୁଛ ବାଳିକା ? ମଣିଷ କି କେବେ ମଣିଷର ରୋଗ ହୋଇପାରେ ?—ଜ୍ୱର ହୋଇଥିବ କି ଆଉ କିଛି ହୋଇଥିବ । ତା ନ ହେଲେ କି ମଣିଷ ପାଇଁ ମଣିଷ ମରେ ? ଘାତମତ ଚକିତ୍ସା ହୋଇଥିଲା କି ?

ରଙ୍ଗିଲ—ମହାଶୟ ! କିଏ ଅପଣ ? (ଅନୁଚ୍ଚସ୍ୱରରେ ) ଛଦ୍ମବେଶୀ କେହି ନୁହନ୍ତି ତ ?

ଅର୍ଜ୍ଜୁନ—[ସ୍ୱଗତଃ] ଛଦ୍ମବେଶୀ ! ଏ ବାଳିକା ଜାଣିଲା କିପରି ?—ଏତେ ଘୋଡ଼ା-ଘୋଡ଼ିରେ ବି ଧରା ପଡ଼ିଗଲି ? ମୁଁ ତ ଆରମ୍ଭରୁ କହୁଛି ଯେ ସତ ନଷ୍ଟେ ଦିନେ ନା ଦିନେ ପ୍ରକାଶ ପାଇବ । ନିଆଁକୁ ହଜାର ବାନ୍ଧି ରଖିଲେ କିଣ ନିଜ ରୂପ ନ ଦେଖାଇ ଛାଡ଼ିବ ?

ରଙ୍ଗିଲ—ମହାଶୟ ! ଦୋଷ କ୍ଷମା କରିବେ । ମୋର ମତି ବର୍ତ୍ତମାନ ସ୍ଥିର ନାହିଁ—କିଣ କହୁ କହୁ କିଣ କହି ପକାଇଛି ।

ଅର୍ଜ୍ଜୁନ—ନା, ନା—ତୁମେ ତ ଏମିତେ କିଛି କହୁନାହିଁ ? ଯାହା ସତ୍ୟ, ତାହାହିଁ କହୁଛ ।

ରଙ୍ଗିଲ—ତେବେ କିଣ ଆପଣ ନିଶ୍ଚୟ ଛଦ୍ମବେଶୀ ! (ସ୍ୱଗତ) ବିଦ୍ୟୁତ୍ ! ଆଉଥରେ—ତା' ପରେ ଯାହା ମନେ କରିଛି, ଯେବେ ତାହା ହିଁ ହୁଏ, ତେବେ—ତେବେ—

ଅର୍ଜ୍ଜୁନ—ଏତେ ଅଧୀର ହେଉଛ କାହିଁକି ବାଳିକା ?—ତୁମ୍ଭର କିଣ କେହି ନିରୁଦ୍ଦେଶ ହୋଇ ଯାଇଛନ୍ତି ?

ରଙ୍ଗିଲ—(ସ୍ୱଗତଃ) ଠିକ୍ ସେହି ସ୍ୱର ! (ପ୍ରକାଶ୍ୟେ) ମହାଶୟ, ଏହି ବାଳିକାର ଧୃଷ୍ଟତା ମାର୍ଜନା କରି ଥରେ ସ୍ୱରୂପ ପ୍ରକାଶ କରନ୍ତୁ—କପଟତା ତ୍ୟାଗ କରି ଥରେ ଆତ୍ମ-ପରିଚୟ ପ୍ରଦାନ କରନ୍ତୁ ।

ଅର୍ଜ୍ଜୁନ—ବାଳିକା ! ତୁମ୍ଭର କଣ୍ଠସ୍ୱର ଶୁଣି ମୋର ନାନା କଥା ମନେ ପଡ଼ି ଯାଉଛି—ସେଇଥିପାଇଁ ତୁମ୍ଭପ୍ରତି ମୋ ମନ ଭାରି ଆକୃଷ୍ଟ ହେଉଛି । ଆତ୍ମ-ପରିଚୟ ପ୍ରକାଶ ପାଇଲେ ମୋର ପରିଣାମ ଯେ କି ଭୟଙ୍କର, ତା ନିଜେ ମୁଁ ଭାବି କଣ୍ଟକିତ ହେଉଛି, ତଥାପି ତୁମ୍ଭଠାରେ ପ୍ରକାଶ କରିବାକୁ ମୁଁ କୁଣ୍ଠିତ ନୁହେଁ, କିନ୍ତୁ ତାହା ଜାଣି ତୁମେ କ'ଣ କରିବ ?

ରଙ୍ଗିଲି—[ସ୍ୱଗତଃ] କ'ଣ କରିବି ? ସ୍ୱର୍ଗ ଯେ ହାତରେ ପାଇବି । "ଅଗ୍ନି-ପରିଚୟ ପ୍ରକାଶ ପାଇଲେ ପରିଣାମ ଭୟଙ୍କର"—ତେବେ କଣ ସ୍ୱାମୀ ମୋର ଛଦ୍ମବେଶ ଧାରଣ କରିଅଛନ୍ତି ?—ଉପରି ଜାଣିବି ]

ଅର୍ଜୁନ—ବାଳିକା ! ନୀରବ ହେଲେ କାହିଁକି ? ତୁମ୍ଭର କଥା ଯେ ମୋତେ ବଡ଼ ମଧୁର ଲାଗୁଥିଲା—ତୁମେ କ'ଣ ମୋ ଉପରେ ରାଗ କଲ ? ତେବେ ଦେଖ ମୋତେ—

[ ଆଲୋକ ହସ୍ତେ ବୀରେନ୍ଦ୍ର ପ୍ରବେଶ କଲା ]

ବୀରେନ୍ଦ୍ର—ସେ ଭଣ୍ଡ କେଉଁଆଡ଼େ ପଳାଇଗଲା, ଭାଇ !

[ ଅର୍ଜୁନ ଛଦ୍ମବେଶ ତ୍ୟାଗକରି ଛିଡ଼ାହେଲେ ]

ବୀରେନ୍ଦ୍ର—(ଅର୍ଜୁନଙ୍କୁ ଦେଖି) ଏ କ'ଣ ? ଏ କ'ଣ, ଭାଇ ?

ରଙ୍ଗିଲି—( ସବେଗେ ) ପ୍ରାଣେଶ୍ୱର ! ପ୍ରାଣେଶ୍ୱର !

[ବୁକୁ ଉପରେ ଢଳି ପଡ଼ିଲେ ]

ଅର୍ଜୁନ—ରଙ୍ଗିଲି ! ରଙ୍ଗିଲି ! ପ୍ରାଣେଶ୍ୱରୀ ! ପ୍ରେମମୟୀ !

[ ପରସ୍ପରକୁ ଦୃଢାଲିଙ୍ଗନ କଲେ ]

ବୀରେନ୍ଦ୍ର—ଧନ୍ୟ ଈଶ୍ୱର ! ଆଶ୍ଚର୍ଯ୍ୟ ଭାବେ ଆଜି ଯେଉଁପରି ପରସ୍ପରର ମିଳନ ଘଟାଇ ଦେଲେ ସେହିପରି ଆଶ୍ଚର୍ଯ୍ୟ ଭାବେ ରାଜା-ପ୍ରଜାର, ବନ୍ଧୁ-ବନ୍ଧୁର, ପିତା-ପୁତ୍ରର ମିଳନ କେବେ ଘଟାଇ ଦେବେ ?

[କରୁଣଭାବେ ରହି ରହିଲେ]

—o—

ଚତୁର୍ଥ ଦୃଶ୍ୟ :—

(ଶ୍ମଶାନ)

[ ବନ୍ଦୀଭାବରେ ଗୋବିନ୍ଦ ବିଦ୍ୟାଧର, ଘାତକ ଓ ଅସ୍ତ୍ର-ବିହ୍ୱଳ ସୈନ୍ୟଗଣ ପ୍ରବେଶ କଲେ ]

ଗୋବିନ୍ଦ—ଛି ଭାଇମାନେ ! ତୁମ୍ଭେମାନେ ବୀର ହୋଇ କାନ୍ଦୁଛ ?

ସୈନ୍ୟଗଣ—ପ୍ରଭୋ ! ପ୍ରଭୋ ! (ଅସ୍ତ୍ର ବିସର୍ଜନ କଲେ)

ଗୋବିନ୍ଦ—ଛି-ଛି ! ଯେଉଁ ବୀରଗଣ, ଉଦ୍‌ଗୀରଣପରାୟଣ ଶତ ଶତ ତୋପ ସମ୍ମୁଖକୁ ଦର୍ପୋତ୍‌ଫୁଲ୍ଲ ବଦନରେ ଧାଇଁ ଯାଆନ୍ତି—ଯେଉଁ ବୀରଗଣ ନିଷ୍କୋଷିତ ଶତ ଶତ କୃପାଣ ନିମ୍ନରେ ପରମ ଆଗ୍ରହରେ ରଣକୌଶଳ ପ୍ରଦର୍ଶନ କରନ୍ତି, ସେହି ବୀରଗଣ ଆଜି ଗୋଟିଏ ଅପରାଧୀର ଦଣ୍ଡ ହେତୁ ବ୍ୟଥିତ—ଗୋଟିଏ ଘୃଣ୍ୟ ରାଜ-ହତ୍ୟାକାରୀର ପ୍ରାଣଦଣ୍ଡ ହେତୁ ଅଶ୍ରୁସିକ୍ତ ?

ରଣଜିତ୍—ପ୍ରଭୋ ! ଏ' କି ରାଜ-ହତ୍ୟାକାରୀର ପ୍ରାଣଦଣ୍ଡ ?—ଏ' କି ଅପରାଧୀର ଦଣ୍ଡ ? [ ସମସ୍ତଙ୍କୁ ଉଦ୍ଦେଶ୍ୟ କରିବାବେ ଗୁହିଁ ] ଏ' ଯେ ନିରପରାଧର ଦଣ୍ଡ—ଏ' ଯେ ରାଜ-ପ୍ରତିଷ୍ଠାତାର ପ୍ରାଣ ଦଣ୍ଡ !

ସମସ୍ତେ—ଠିକ୍ କହୁଛ ଭାଇ ! ଠିକ୍ କହୁଛ ।

ଗୋବିନ୍ଦ—ସୈନ୍ୟଗଣ ! ତୁମ୍ଭମାନଙ୍କର ଆଜି ଏ କି ଆଚରଣ ? ଏ କି ବିଦ୍ରୋହଭାବ ? —ଯେଉଁମାନେ କର୍ମ ସମୟରେ ରାଜାଦେଶ ପାଳନ ନିମନ୍ତେ ନିଜର ସୁଖ ସ୍ୱାଚ୍ଛନ୍ଦ୍ୟ ଅବହେଳେ ବିସର୍ଜନ କରନ୍ତି—ଯେଉଁମାନେ ରଣକ୍ଷେତ୍ରରେ ରାଜୋଦ୍ଦେଶ୍ୟ ସାଧନ ନିମନ୍ତେ ମୃତ୍ୟୁର କରାଳ-ମୂର୍ତ୍ତିକୁ ଅବଲୀଳାକ୍ରମେ ଆଲିଙ୍ଗନ କରନ୍ତି, ସେହି ବୀରମାନଙ୍କ ମୁଖରେ ଆଜି ଏ' କି ବାକ୍ୟୋଚ୍ଚାରଣ—ସେହି ଭକ୍ତମାନଙ୍କ ହୃଦୟରେ ଆଜି ଏ କି ଭାବୋଚ୍ଛ୍ୱାସ ?

ରଣଜିତ୍—ପ୍ରଭୋ ! ଆମ୍ଭେମାନେ ଧର୍ମର ଦାସ--ଅଧର୍ମର ନୋହୁଁ ।

ଗୋବିନ୍ଦ—ରାଜ-ବିଦ୍ରୋହ କି ଧର୍ମ ?

ରଣଜିତ୍—ରାଜା ଅଧର୍ମାଚରଣ କଲେ କଦାପି ରାଜାପଦ-ବାଚ୍ୟ ନୁହେଁ ।

ଗୋବିନ୍ଦ—ଅପରାଧୀକୁ ଦଣ୍ଡଦେବା କି ରାଜାର ଅଧର୍ମ ?

ରଣଜିତ୍—ଏ' ଯେ ନିରପରାଧର ଦଣ୍ଡ !

ଗୋବିନ୍ଦ—ପ୍ରଣାମ ?

ରଣଜିତ୍—ଆପଣଙ୍କର ସୌମ୍ୟ-ମୂର୍ତ୍ତି । ଅମ୍ଭମାନଙ୍କର ଧ୍ରୁବ-ବିଶ୍ୱାସ···

ଗୋବିନ୍ଦ—( ହସି ) ରଣଜିତ୍ ! ବିଶ୍ୱାସ ଉପରେ କି କେବଳ ରାଜନୀତି ତିଷ୍ଠି ପାରେ ? ମନୋହର ଗୋଲାପରେ କି ବିଷାକ୍ତ କୀଟ ଲୁକ୍କାୟିତ ନ ଥାଏ ?

ରଣଜିତ୍—ପ୍ରଭୋ ! ଆପଣଙ୍କର ବିଜ୍ଞ-ବ୍ୟକ୍ତିଙ୍କ ସହିତ ତର୍କରେ ତିଷ୍ଠିବା ଏ' ମୂର୍ଖମାନଙ୍କ ପକ୍ଷେ ଅସମ୍ଭବ; ତଥାପି ସ୍ଥିର ଜାଣନ୍ତୁ, ପ୍ରଭୋ—ଏହା ଆମ୍ଭମାନଙ୍କର ଦୃଢ଼ ବିଶ୍ୱାସ ଯେ ଆପଣ ନିରପରାଧ, ତେଣୁ ଆପଣଙ୍କର ଏ ଦୁର୍ଦ୍ଦଶା ଆମ୍ଭେମାନେ କଦାପି ସହ୍ୟ କରିପାରିବୁ ନାହିଁ ।

ସମସ୍ତେ—ପ୍ରାଣ ଥାଉଁ ଥାଉଁ କଦାପି ନୁହେଁ, ଭାଇ ।

ଗୋବିନ୍ଦ—ଭାଇମାନେ ! ଏ ଅଧମ ପ୍ରତି ଏତେ ସ୍ନେହ ! ନରହନ୍ତା, ରାଜହନ୍ତା ଜାଣି ସୁଦ୍ଧା ଏତେ ଭକ୍ତି ! !

ରଣଜିତ୍—ଯେବେ ବିଶ୍ୱାସ ନ ହୁଏ ତେବେ ଏହିକ୍ଷଣି ଆଦେଶ କରନ୍ତୁ ପ୍ରଭୋ ! ଆମ୍ଭେମାନେ ତରବାରି ସାହାଯ୍ୟରେ ବକ୍ଷୋଦେଶ ବିଦୀର୍ଣ୍ଣ କରିଦେଉଛୁଁ, ଦେଖିବେ ସେଠାରେ କାହାର ମୂର୍ତ୍ତି ପୂଜା ପାଉଛି—କାହାର ନାମ ନିତ୍ୟ ଜପାମାଳା ହୋଇ ରହିଛି !

ସମସ୍ତେ—ଆଦେଶ କରନ୍ତୁ ପ୍ରଭୋ ! [ଅସି ନିଷ୍କୋଷିତ କଲେ ]

ଗୋବିନ୍ଦ—କ୍ଷାନ୍ତ ହୁଅ ଭାଇମାନେ ! ଏ ଅଧମ ଅତୀବ ଭାଗ୍ୟବାନ୍ ଯେ ରାଜ-ହନ୍ତା, ନର-ହନ୍ତା ହୋଇ ସୁଦ୍ଧା ତୁମ୍ଭମାନଙ୍କର ସ୍ନେହ ଓ ଭକ୍ତି-ସମ୍ପଦ ସୁଖରୁ ତିଳେମାତ୍ର ବଞ୍ଚିତ ହୋଇନାହିଁ; ତେଣୁ ଏ' ଅଧମର ଗୋଟିଏ ଅନୁରୋଧ ରକ୍ଷା କରିବ ନାହିଁ ?

ସମସ୍ତେ—ଅନୁରୋଧ କ'ଣ ପ୍ରଭୋ ! ଆଦେଶ କରନ୍ତୁ !

ରଣଜିତ୍—ଆପଣ ମୁକ୍ତି-ଲାଭ କଲେ ଏହି ଘାତକର ଖଡ୍‌ଗ ଯେବେ ଆମ୍ଭ ସମସ୍ତଙ୍କ ଉପରେ ପଡ଼େ ତେବେ ମଧ୍ୟ ସାନନ୍ଦେ ସମସ୍ତେ ପ୍ରସ୍ତୁତ ପ୍ରଭୋ !

ବିନ୍ଦ—ମତି ସ୍ଥିର କର ଭାଇମାନେ—ଏପରି ଉତ୍ତେଜିତ ହେଲେ ଏ ଅଧମର କୌଣସି ଅନୁରୋଧ ନାହିଁ ।

ରଣଜିତ୍—ଆଚ୍ଛା, ପ୍ରଭୋ ! ଆମ୍ଭେମାନେ ସ୍ଥିର ହେଉଛୁ ।

ଗୋବିନ୍ଦ—ତେବେ ପ୍ରତିଜ୍ଞା କର ଭାଇମାନେ—ଏ ଅଧମ ଯେଉଁ ଅନୁରୋଧ କରିବ ତାହା ପ୍ରାଣମୂଲ୍ୟରେ ମଧ୍ୟ ପ୍ରତିପାଳନ କରିବାକୁ କୁଣ୍ଠିତ ହେବ ନାହିଁ !

ସମସ୍ତେ—ଏହି, ଆମ୍ଭେମାନେ ଚରଣ ସ୍ପର୍ଶ କରି ପ୍ରତିଜ୍ଞା କରୁଛୁ, ଈଶ୍ୱରଙ୍କ ନାମନେଇ ଶପଥ କରୁଛୁ—ପ୍ରାଣପଣେ ପ୍ରତିଜ୍ଞା ପାଳନ କରିବୁ ।

ଗୋବିନ୍ଦ—ତୁମ୍ଭେମାନେ ଉତ୍ତମରୂପେ ଅବଗତ ଅଛ ଭାଇମାନେ ! ଆମ୍ଭମାନଙ୍କ ସ୍ୱର୍ଗୀୟ ମହାରାଜା ପ୍ରତାପରୁଦ୍ର ଦେବ ଓ ତାଙ୍କର ପୂର୍ବପୁରୁଷମାନେ ବହୁ ଯତ୍ନ ଓ ବହୁ ଆୟାସରେ ମାତୃଭୂମିକୁ ଯେଉଁ ସୁଖ-ଶାନ୍ତି ଦାନ କରି ଯାଇଥିଲେ, ତାହା ତାଙ୍କ ଅନ୍ତେ ଯୁବରାଜ ଅଳ୍ପ ବୟସ୍କଥିବା ହେତୁ ଓ ବହିଃଶତ୍ରୁମାନଙ୍କ ଚିରକାଳ ଏହି ରତ୍ନ-ଭଣ୍ଡାର ପ୍ରତି ଲୋଲୁପ ଦୃଷ୍ଟି ଥିବା ହେତୁ ଏକାବେଳକେ ନଷ୍ଟ ହୋଇଯାଇଥାନ୍ତା ନିଶ୍ଚୟ—ମାତ୍ର ତୁମ୍ଭେମାନେ ରାଜଭକ୍ତ—ଦେଶାନୁରକ୍ତ ବୋଲି ଏ ଯାବତ୍ ସେହି ସୁଖ-ଶାନ୍ତି ସେହିପରି ଅକ୍ଷୁଣ୍ଣ ରହିଅଛି, ବରଂ ଦିନୁଦିନ ବୃଦ୍ଧି ପାଇ ଆସୁଅଛି ।

ରଣଜିତ୍—କିନ୍ତୁ ଆଜିଠାରୁ ତା'ର ଅବସାନ ପ୍ରଭୋ !

ଗୋବିନ୍ଦ—ତୁମ୍ଭେମାନେ କ'ଣ ତେବେ ଦେଶଦ୍ରୋହୀ ?

ରଣଜିତ୍—ସେ ଆଖ୍ୟା ଉତ୍କଳୀୟ ପକ୍ଷେ ଅସହ୍ୟ ପ୍ରଭୋ !

ଗୋବିନ୍ଦ—ତେବେ ?

ରଣଜିତ୍—କହନ୍ତୁ ପ୍ରଭୋ ! କର୍ଣ୍ଣଧାର ବିହୁନେ ନୌକା କି କେବେ ଚାଲିପାରେ ?

ଗୋବିନ୍ଦ—ନୌକା ତ ଏକାବେଳକେ କର୍ଣ୍ଣଧାର ବିହୀନ ନୁହେଁ ? —କାରଣ ରାଣୀ ଅଛନ୍ତି କଥରୁଦ୍ର ଦେବ ମଧ୍ୟ ଅଚିରକାଳେ ଉପଯୁକ୍ତ ହୋଇ ଉଠିବେ ।

ରଣଜିତ୍—ତେବେ ନୌକା ଯେପରି ଚାଳିତ ହେବ ସେହିପରି ଚାଲିବ ।

ଗୋବିନ୍ଦ—ଏହିଠାରେ ମୋର ଅନୁରୋଧ ଭାଇମାନେ ନୌକାକୁ ଧୀରସ୍ଥିର ହୋଇ ଚାଲିବାକୁ ହେବ—ସରଳ କଥାରେ ତୁମ୍ଭେମାନେ ନିଜ ନିଜ କାର୍ଯ୍ୟ ମନେକରି ସେହିପରି ଉଦ୍ୟମ କରିବ—ସେହିପରି ଭକ୍ତିର ସହିତ କାର୍ଯ୍ୟ କରିବ ଯେମନ୍ତି କି ଏ' ପର୍ଯ୍ୟନ୍ତ ଦେଶରେ ଯେଉଁ ଶାନ୍ତି—ପ୍ରଜାମାନଙ୍କ ମଧ୍ୟରେ ଯେଉଁ ପ୍ରୀତି ଦେଖି ଆସିଅଛ ତାହା ଚିରକାଳ ଅତୁଟ ରୁହେ ଆଉ କ୍ରମେ କ୍ରମେ ବୃଦ୍ଧି ମଧ୍ୟ ପାଏ ! ଆଉ ବିଶେଷ ଦୃଷ୍ଟି ରଖିବ ଭାଇମାନେ ଯେମନ୍ତେ କି ରାଜ-ପରିବାର ମଧ୍ୟରେ ଅନ୍ୟ କୌଣସି ଦୁର୍ଘଟଣା ନ ଘଟେ !

ସମସ୍ତେ—ପ୍ରଭୋ !

ଗୋବିନ୍ଦ—ଭାଇମାନେ ! ଏହି ଅନୁରୋଧକୁ ରକ୍ଷାକଲେ ମୁଁ ନିଶ୍ଚିନ୍ତ ମନରେ ଇହଧାମରୁ ବିଦାୟ ନେଇ ପାରିବି, ଅନ୍ୟଥା ମୋର ମୁକ୍ତି ଅସମ୍ଭବ ହୋଇ ଉଠିବ ।

[ମୁକୁନ୍ଦଙ୍କର ପ୍ରବେଶ]

ରଣଜିତ୍—ସେନାପତେ ! ଆଜି କି ଦୃଶ୍ୟ ଦେଖାଉଛ —କି କାର୍ଯ୍ୟ କରିବାକୁ ବସିଛ ?

ମୁକୁନ୍ଦ—ଚଣ୍ଡାଳ—ଚଣ୍ଡାଳାଧମ କାର୍ଯ୍ୟ କରିବାକୁ ଆସିଛି ତୁମ୍ଭର ସେନାପତି, ରଣଜିତ୍ ! —ଏକାଧାରରେ ନର-ହତ୍ୟା, ପ୍ରଭୁ-ହତ୍ୟା, ପିତୃ-ହତ୍ୟା !—

ଗୋବିନ୍ଦ—ମୁକୁନ୍ଦ—ନା ସେନାପତେ ! ନିର୍ଦ୍ଦିଷ୍ଟ ସମୟ ଉତ୍ତୀର୍ଣ୍ଣ ପ୍ରାୟ ।

ମୁକୁନ୍ଦ—ପ୍ରଭୋ ! (ଅଶ୍ରୁମୋଚନ କରିବା)

ଗୋବିନ୍ଦ—ସେନାପତେ ! ଏହିକି ତୁମ୍ଭର କର୍ତ୍ତବ୍ୟପରାୟଣତା ?—ଏହି କି ତୁମ୍ଭର ରାଜଭକ୍ତି ?—ଆସ ଘାତକ ! ତୁମ୍ଭର କାର୍ଯ୍ୟ ତୁମେ କର ।

ଘାତକ—ହୁକୁମ, ସେନାପତେ !

ମୁକୁନ୍ଦ—( କ୍ରୁଦ୍ଧ ହୋଇ) ନରାଧମ !

ଘାତକ—ଆମ୍ଭେମାନେ ହୁକୁମର ଚାକର ସାଆନ୍ତେ—ଭାଇ ହେଲେ କ'ଣ, ବାପା ହେଲେ କ'ଣ, ମା ହେଲେ କ'ଣ—ଆମେ ହୁକୁମ ତାମିଲ କରିବାକୁ ବରାବର ହାଜର ସାଆନ୍ତେ ।

ଗୋବିନ୍ଦ—ଶୁଣ ସେନାପତେ !

ରଣଜିତ୍—ଉଃ—କି ପାଷାଣ ହୃଦୟ !

ଘାତକ—କ'ଣ କରିବା ସାଆନ୍ତେ—ଚାକରୀ କରୁଛୁ; ନିମକ୍ ଖାଉଛୁ, ହୁକୁମ ନ ମାନିବା କିପରି ?

ଗୋବିନ୍ଦ—ଦେଖ, ଦେଖ ସମସ୍ତେ—ପ୍ରଭୁ-ଭକ୍ତ ଓ କର୍ତ୍ତବ୍ୟପରାୟଣର କି ଜୀବନ୍ତ ପ୍ରତିମୂର୍ତ୍ତି ! —ଶୀଘ୍ର ଆଦେଶ କର ସେନାପତେ—ସମୟ ଉତ୍ତୀର୍ଣ୍ଣ ପ୍ରାୟ ।

[ ଆଣ୍ଠୁ ମାଡ଼ି ବସିବା ]

ସମସ୍ତେ—ପ୍ରଭୋ ! ପ୍ରଭୋ ! କ'ଣ କହୁଛନ୍ତି ? ଚାଲ ଭାଇମାନେ—ଏ ରାଜ୍ୟରେ ଆଉ ଦଣ୍ଡେ ରହିବା ନାହିଁ ।

ଗୋବିନ୍ଦ—ଏହି ତୁମ୍ଭମାନଙ୍କର ପ୍ରତିଜ୍ଞା, ଭ୍ରାତୃଗଣ ?

ସମସ୍ତେ—ଉଃ—(ବିକଳ ହୋଇ ଉଠିଲେ )

ଗୋବିନ୍ଦ—ଦିଅ ଆଦେଶ ସେନାପତେ !

ମୁକୁନ୍ଦ—କର୍ତ୍ତବ୍ୟ ତୁମ୍ଭର କର ଘାତକ !—ଏହି ମୋର ଶେଷ କର୍ତ୍ତବ୍ୟ ।

(ଦ୍ରୁତ ପ୍ରସ୍ଥାନ)

ଗୋବିନ୍ଦ—(ଊର୍ଦ୍ଧ୍ୱଦୃଷ୍ଟି ହୋଇ) ଦେଶର ମଙ୍ଗଳ ହେଉ—ରାଜାଙ୍କର ମଙ୍ଗଳ ହେଉ—ରାଜ୍ୟର ମଙ୍ଗଳ ହେଉ !

ଘାତକ—ଜୟ ମହାରାଜ ଉତ୍କଳେଶ୍ୱରଙ୍କର ଜୟ ! (ଖଡ୍ଗ ଧାରଣ)

[ ସମସ୍ତେ 'ଉଃ' କହି ପ୍ରସ୍ଥାନୋଦ୍ୟତ ହେବା କାଳେ ଜଥରୁଦ୍ର ଦେବ ବେଗେ ପ୍ରବେଶ କଲେ ଓ ତାହିଁ ସଙ୍ଗେ ସଙ୍ଗେ ମୁକୁନ୍ଦ ମଧ୍ୟ ପ୍ରବେଶ କଲେ ]

କଥରୁଦ୍ର—କ୍ଷାନ୍ତହୁଅ ଘାତକ ! ଆସ ଭାଇ !

[ ଗୋବନ୍ଦଙ୍କୁ ଉଠାଇ ନଜେ ବନ୍ଧନ ମୁକ୍ତ କରଦେଲେ ]

ସମସ୍ତେ—ଜୟ ମହାରାଜାଙ୍କର ଜୟ—ଜୟ ମନ୍ତ୍ରୀ ମହାଶୟଙ୍କର ଜୟ !

ଗୋବନ୍ଦ – ଏ' କ ହୁକୁମ, ମହାରାଜ ! ରାଜ-ହନ୍ତା କ'ଣ ଧରା ପଡ଼ିଛ ? ନା ପୁଣି ମାତୃ-କଥାର ଅବାଧ ହୋଇଛ ?

କଥରୁଦ୍ର—କ୍ଷମାକର ମନ୍ତ୍ରୀଭାଇ ; ଶୀଘ୍ର ଆସ—ଗୋବର୍ଦ୍ଧନ ସର୍ବନାଶ କରଛି—ମା'ଙ୍କର ଆଶା ଅତ ଅଳ୍ପ—ଏଥର ସମସ୍ତେ ସ୍ଥିର ବଶ୍ୱାସ କରଛନ୍ତ ସେହି ପାପିଷ୍ଠ ହିଁ ଭାଇଙ୍କୁ ମୋର ହତ୍ୟା କରଛି ।

[ବେଗେ ବାହାରେ ଯିବା କାଳେ ଜଗଦମ୍ବା ପ୍ରବେଶ କଲେ ]

ଜଗଦମ୍ବା—ହାଃ-ହାଃ-ହାଃ—କମଳୀକୁ ବ କ'ଣ ଗ୍ଳୁଡ଼ିଛ ?

ଗୋବନ୍ଦ—(ଅର୍ଦ୍ଧ ସ୍ୱଗତଃ) କନଆ ବୌ !

ଜଗଦମ୍ବା—ସେ ଏକା କାହିଁକ ମାରବ ? ମୁଁ ବ କ'ଣ ତା ସଙ୍ଗେ ଜଣେ ନୁହେଁ ?

କଥରୁଦ୍ର—କଣ କହୁଛ ନୂଆବୌ—କଏ କାହାକୁ ମାରଛି ?

ଜଗଦମ୍ବା—ଏହି ଯେ କଥ ! ତୁମେ ମୋର କମଳୀକୁ ବଡ଼ ଭଲ ପାଉଥିଲ—ନା ?

କଥରୁଦ୍ର—କମଳାର କଣ ହୋଇଛ ନୂଆବୌ ?

ଜଗଦମ୍ବା—(ଗୋବନ୍ଦ ଆଡ଼େ ଚାହିଁ) ସ୍ୱାମୀର ମୂର୍ତ୍ତି ଧର ତୁମ୍ଭେ ଏଠି କଏ ଛୁଡ଼ା ହୋଇଛ ?

ଗୋବନ୍ଦ—କନଆ ବୌ !

ଜଗଦମ୍ବା—ଠିକ୍ ସେହିପର ତ ଡାକୁଛ ?—ତେବେ କ'ଣ ତୁମେ ଅଛ ?

ଗୋବନ୍ଦ—ହଁ ଅଛି କନଆ ବୌ !

ଜଗଦମ୍ବା—ଅଛ ? ଅଛ ଯେବେ, କାହିଁ ତୁମ୍ଭର ସ୍ୱରରେ ତ ବଜ୍ର-ନର୍ଘୋଷ ବାହାରୁ ନାହିଁ ?—ଚକ୍ଷୁରୁ ଅଗ୍ନ୍ୟୁଦ୍ଗୀରଣ ହେଉନାହିଁ ?—ସର୍ବାଙ୍ଗ ତ ଆଗ୍ନେୟଗିର ପର କମ୍ପି ଉଠୁନାହିଁ ?

ଗୋବିନ୍ଦ—ଏ' କଣ କହୁଛ ନନ୍ଦଆ ବୌ ? ମୁଁ ଯେ କିଛି ବୁଝିପାରୁ ନାହିଁ ?

ଜଗଦମ୍ବା—ହାଃ-ହାଃ-ହାଃ—ବୁଝିବ କିପରି ? ମୋର ସ୍ୱାମୀ ହୋଇଥିଲେ ସିନା ବୁଝନ୍ତ ।

ଗୋବିନ୍ଦ—ବୁଝିଛି, ବୁଝିଛି ନନ୍ଦଆ ବୌ ! ତୁମେ ମୋ ପକାଶେ ଏକାବେଳକେ ଉନ୍ମାଦିନୀ ହୋଇ ଯାଇଛ ।

ଜଗଦମ୍ବା—ତୁମ ପକାଶେ ଉନ୍ମାଦିନୀ ? ହାଃ ହାଃ-ହାଃ—ଏତ୍ତା ବୁଝିଲ ପରି ?—ଯେ ନିଜ ହାତରେ ସ୍ୱାମୀକୁ ଶୂଳୀ ଦେଇପାରେ, ତା'ର ଏକମାତ୍ର ସନ୍ତାନକୁ ନ ଖୁଆଇ ମାରିପାରେ—

କଥରୁଦ୍ର—କାହାକୁ ? କାହାକୁ ନୂଆବୌ ?

ଜଗଦମ୍ବା—ତୁମର ଆଦରଣୀ କମଳୀ, କଥ—ତା'କୁ ଅନ୍ଧାରଘରେ ବନ୍ଧକରି ମଧ୍ୟ ମାରି-ପାରେ ଯେ, ସେ ପୁଣି କାହାର ପକାଶେ ଉନ୍ମାଦିନୀ ହେବ ?

କଥରୁଦ୍ର—ଏ' କ'ଣ ଶୁଣୁଛି ?—ସତ କହୁଛ ନୂଆବୌ ! ବଉଳ ମୋର ଏ ସଂସାରେ ଆଉ ନାହିଁ ?

ଗୋବିନ୍ଦ—କମଳୀ ମୋର ନାହିଁ ? —ନା, ନା—ବର୍ତ୍ତମାନ ଶୋକ କରିବାର ସମୟ ନୁହେଁ । ମୁକୁନ୍ଦ ! ତୁମେ ମା'ଙ୍କୁ ଘରକୁ ଘେନି ଯାଅ । ମହାରାଜ ! ଶୀଘ୍ର ଆସନ୍ତୁ—ମୁଁ ଦେଖେଁ, ରାଣୀମା'ଙ୍କ ଅବସ୍ଥା କିପରି ଅଛି !

କଥରୁଦ୍ର—ଓଃ-ହୋଃ—ବଉଳ ମୋର ନାହିଁ !

ଜଗଦମ୍ବା—ଦେଖିଲ, ଦେଖିଲ—କେମିତି ପଳାଇଗଲ ?—ଏ କୁଆଡ଼େ ମୋର ସ୍ୱାମୀ ?—ସ୍ୱାମୀକୁ ମୋର ଦେଖିବ ? ଦେଖ, କି ଭୀଷଣ ମୂର୍ତ୍ତି ଧରି ଛିଡ଼ା ହୋଇଛି !—ଏକ ହାତରେ ଗୋଟାଏ ଲୁହାର ଶିକୁଳି, କେବଳ କଣ୍ଟାମୟ—ଅନ୍ୟ ହାତରେ ଗୋଟିଏ ଲୌହ ଶଳାକା, ନିଆଁରେ ପାଚି ରହିଛି—ମୋର ହାତଗୋଡ଼ ଖୁବ୍ କସି ବାନ୍ଧିବେ, ସେହି ଶଳାକାରେ ଠାଁ ଠାଁ କରି ଚିଆଁ ଦେବେ ! —ଓଃ ହୋଃ ଭାରି ପୋଡୁଛି, ଭାରି କାଟୁଛି—ପାଣି ! ପାଣି !

[ ଦ୍ରୁତ ପଳାୟନ ସମୟରେ ଖଣ୍ଡେ କାଗଜ ତଳେ ପଡ଼ିଗଲା]

ମୁକୁନ୍ଦ—ଅଟକାଅ—ଅଟକାଅ ! (ପଶ୍ଚାଦ୍ଧାବନ)

[କଥରୁଦ୍ର ଛଡ଼ା ସମସ୍ତଙ୍କର ପ୍ରସ୍ଥାନ]

କଥରୁଦ୍ର—ଏ' କଣ ? କି କାଗଜ ଖଣ୍ଡେ ପଡ଼ିଗଲା ? ଦେଖେଁ, ଦେଖେଁ ! (ଫିଟାଇ ଦେଖି) ଏ' ଯେ କମଳାର ଲେଖା ।

"ବକୁଳ !

ମନରେ କେତେ ଆଶା ଥିଲା; କିନ୍ତୁ ବିଧି ତାହା ପୂର୍ଣ୍ଣ କଲେ ନାହିଁ—ସେ ଯାହା ହେଉ, ମୋ ମନରେ ବଡ଼ ଦୁଃଖ ରହିଗଲା ଯେ ଶେଷକୁ ତୁମେ ମଧ୍ୟ ମୋତେ ଅବିଶ୍ୱାସ କଲ "—ଅବିଶ୍ୱାସ !" ତୁମ୍ଭେ ନିଶ୍ଚୟ ଆଶ୍ଚର୍ଯ୍ୟ ବୋଧ କରିବ—ମାତ୍ର ମନେ କର, ବିଚାର ସମୟରେ ଅଧିକାଂଶ ସଭ୍ୟ ଯେତେବେଳେ କୌଣସି ପ୍ରତିବାଦ ନକରି ନିରୁତ୍ତର ହୋଇ ରହିଲେ, ଯେତେବେଳେ ମୁହିଁ ଏକା ଅଗ୍ରସର ହୋଇ କହିଲି, 'ପିତା ନିର୍ଦ୍ଦୋଷ—ଗୋବର୍ଦ୍ଧନ ହିଁ ହତ୍ୟାକାରୀ—ସେ ଧୃତ ହେଲେ, ସତ୍ୟାସତ୍ୟ ନିଶ୍ଚୟ ପ୍ରକାଶ ପାଇବ'—ସମସ୍ତେ ମୋତେ ହସି ଉଡ଼ାଇ ଦେଲେ—ତୁମ୍ଭ ଆଡ଼କୁ ଚାହିଁଲି—ବିଶ୍ୱାସ ଥିଲା ତୁମେ ମୋର ପ୍ରସ୍ତାବ ସମର୍ଥନ କରିବ—ତୁମ୍ଭେ ମୋତେ ସାହାଯ୍ୟ କରିବ କିନ୍ତୁ ହାୟ ! କଣ ଦେଖିଲି ? ତୁମ୍ଭେ ଥରେମାତ୍ର ମୋ ଆଡକୁ ଚାହିଁ ଅଧୋବଦନରେ ବସି ରହିଲ—ସୁତରାଂ ମୁଁ ନିରାଶ ହୋଇ ଧୀରେ ଧୀରେ ଚାଲି ଆସିଲି । କି ଯେ ଯାତନା ଅନୁଭବ କଲି, ଓଃ—ଆଉ ଯେ ଲେଖି ପାରୁନାହିଁ । ଓଃ"—ବକୁଳ ! ବକୁଳ ! ଏଇଥି ପାଇଁ କ'ଣ ତୁମେ ପ୍ରାଣତ୍ୟାଗ କଲ ? ମୋର ଭ୍ରମ ଯେ ମୁଁ ପରେ ବୁଝି ପାରିଥିଲି । ଆଜି କେତେ ଆଶା କରିଥିଲି, ତୁମ ପିତାଙ୍କୁ ନେଇ ତୁମ ସଙ୍ଗେ ଦେଖା କରିଥାନ୍ତି—ମୋର ଅପରାଧ ନିମନ୍ତେ କ୍ଷମା ମାଗି ନେଇଥାନ୍ତି—ମାତ୍ର ଆଜି ଏ କ'ଣ ଘଟିଲା ? ହାଏ ! କାହିଁକି ତେତେବେଳେ ଲୋକଙ୍କ କଥାରେ ଭୁଲିଗଲି—ଯାହାକୁ ତିଳେ ମାତ୍ର ସନ୍ଦେହ କରିବା ପାପ ମନେ କରନ୍ତି ତାହାକୁ କାହିଁକି ସେ ସମୟରେ ପୂର୍ଣ୍ଣ ସନ୍ଦେହ କଲି ?—ବକୁଳ ! ବକୁଳ [ ହତାଶଭାବେ ରହିଲା ]

(ନେପଥ୍ୟେ) ବୃଥା ଚେଷ୍ଟା । ସୈନ୍ୟଗଣ ! ଲସ୍ ନିଶ୍ଚୟ କେଉଁ ଆଡ଼େ ଲୁଚି ଗଲାଣି ।

ନିତ୍ୟରୂପ—ଏ କ'ଣ ଶୁଣୁଛି ? ନୂଆବୌ କ'ଣ ସତେ ସତେ ତାଙ୍କର ଜ୍ୱାଳା ଲିଭାଇ ଦେଲେ ?—ମୋର ଜ୍ୱାଳା ଏବେ ମୁଁ ଲିଭାଉଛି କିପରି ?

—ଯବନିକା—

ପ୍ରଥମଦୃଶ୍ୟ :—

(କୁଟୀର ସମ୍ମୁଖ)

[ ରଙ୍ଗିଲି ଓ ଅର୍ଜ୍ଜୁନ କଥାବାର୍ତ୍ତା ହେଉଥିଲେ ]

ରଙ୍ଗିଲି—ଦେଖ, ଛଦ୍ମବେଶଟା ଏକାବେଳକେ ତ୍ୟାଗକରିବା ଉଚିତ ହେଉନାହିଁ ।

ଅର୍ଜ୍ଜୁନ—କପଟତା ଆଉ ସହ୍ୟ ହେଉନାହିଁ ପ୍ରିୟେ ।

ରଙ୍ଗିଲି—କ'ଣ କରିବ, କପାଳ-ଦୋଷରୁ ରାଜା ବି ଘୋଡ଼ା-ସଇସ ସାଜେ ।

ଅର୍ଜ୍ଜୁନ—ନା ପ୍ରିୟେ ! ଆଉ ଏଠାରେ ମନ ବଳୁନାହିଁ ।

ରଙ୍ଗିଲି—କାହିଁକି ପ୍ରିୟତମ ! ଏପରି ମନୋରମ ସ୍ଥାନ କ'ଣ ଭଲ ଲାଗୁନାହିଁ ?

ଅର୍ଜ୍ଜୁନ—ଏହାଠାରୁ ଅଧିକତର ମନୋରମ ସ୍ଥାନକୁ ଯିବାପାଇଁ କଣ ଭଲ ଲାଗିବ ନାହିଁ ?

ରଙ୍ଗିଲି—ଏହାଠାରୁ ଅଧିକତର ମନୋରମ ସ୍ଥାନ କଅଣ ଏ ସଂସାରରେ ଅଛି ?

ଅର୍ଜ୍ଜୁନ—ତୁମେ କ'ଣ ଏ ସ୍ଥାନକୁ ଏତେଦୂର ମନୋରମ ମନେକର ?

ରଙ୍ଗିଲି—କୁହ ପ୍ରିୟତମ ! କେଉଁଠାରେ ପ୍ରକୃତିର ଏପରି ନଗ୍ନସୌନ୍ଦର୍ଯ୍ୟ ଦେଖିବାକୁ ମିଳିବ ? କାହିଁ ନିର୍ଝରିଣୀଟିଏ ଝର ଝର ଶବ୍ଦରେ ବନସ୍ଥଳୀ ମୁଖରିତ କରି ପର୍ବତ ପୃଷ୍ଠଦେଇ ଓହ୍ଲାଇ ଆସୁଛି—କାହିଁ ତରୁଣୀ ଲତାଟିଏ କୁଞ୍ଜଦ୍ୱାରେ ଉଙ୍କିଝୁଙ୍କି ମାରୁ-ମାରୁ ଫଳ-ପୁଷ୍ପ ସୌରଭରେ ଚତୁର୍ଦ୍ଦିଗ ଆମୋଦିତ କରୁଛି—କାହିଁ ବିହଙ୍ଗମଟିଏ ସୁମଧୁର ସଙ୍ଗୀତରେ ପ୍ରାଣ-ମନ ଉନ୍ମତ୍ତ କରୁ କରୁ ଯେଣେ ଇଚ୍ଛା ତେଣେ ଉଡୁଛି । ଆହା, କି ମନୋହର ଦୃଶ୍ୟ ! ଯେଉଁଆଡ଼େ ଆଖି-ଫେରାଅ, ସୌନ୍ଦର୍ଯ୍ୟର ଭଣ୍ଡାର—ଯେଉଁଆଡ଼େ କାନ ଡେରି ସଙ୍ଗୀତର ପ୍ରବାହ—ଚକ୍ଷୁ ନିମୀଳିତ କର, ଚିତ୍ତ-ଫଳକରେ ଏକ ମହିମାମୟ ଛବି !

ଅର୍ଜ୍ଜୁନ—(ହାସ୍ୟକରି) ପ୍ରିୟେ ଏହି ସମସ୍ତ କି ପ୍ରକୃତିର ଶ୍ରେଷ୍ଠ ସୌନ୍ଦର୍ଯ୍ୟ ?

ରଙ୍ଗିଲି—ନୁହେଁ ପ୍ରିୟତମ ?

ଅର୍ଜ୍ଜୁନ—ତେବେ ଏହି ସୌନ୍ଦର୍ଯ୍ୟାନୁଭବକାରୀ ମନୁଷ୍ୟର ସ୍ଥାନ କେଉଁଠି ?

ରଙ୍ଗିଲି—ଅବଶ୍ୟ ମନୁଷ୍ୟର ସ୍ଥାନ ସର୍ବୋଚ୍ଚ—ମନୁଷ୍ୟକୁ ପ୍ରକୃତିର ସର୍ବଶ୍ରେଷ୍ଠ ସୌନ୍ଦର୍ଯ୍ୟ ବୋଲିବାକୁ ହେବ—ମାତ୍ର—

ଅର୍ଜ୍ଜୁନ—ମାତ୍ର କ'ଣ ?

ରଙ୍ଗିଲି—ସମସ୍ତେ ଯେବେ ତୁମ୍ଭପରି ହୁଅନ୍ତି—

ଅର୍ଜ୍ଜୁନ—ମୁଁ କ'ଣ ତେବେ ମନୁଷ୍ୟର ବାହାରେ, ପ୍ରିୟେ ? ନା, ନା—ତୁମ୍ଭର ବୁଝିବାର ଭ୍ରମ । ତୁମେ ଯେମିତି—ମା ଓ କମଳୀ ମଧ୍ୟ ସେହିପରି—ମାମୁଁ, ସଙ୍ଗାତ ମଧ୍ୟ ସେହିପରି ।

ରଙ୍ଗିଲି—ତେବେ ଜଣେ କାହିଁକି ନର-ରକ୍ଷକ ଆଉ ଜଣେ କାହିଁକି ନର-ହନ୍ତା ? ଜଣେ କାହିଁକି ସ୍ୱାର୍ଥତ୍ୟାଗୀ ଆଉ ଜଣେ କାହିଁକି ସ୍ୱାର୍ଥପର ?

ଅର୍ଜ୍ଜୁନ—'ସ୍ୱାର୍ଥପର' କିମ୍ବା 'ନରହନ୍ତା' ହେବା ଯେ ମନୁଷ୍ୟର ପ୍ରକୃତି, ତାହା କଦାପି ମନେକର ନା—ସୁସ୍ଥକାୟ ମନୁଷ୍ୟ ପକ୍ଷରେ ଏହା ଏକପ୍ରକାର ବ୍ୟାଧି ମାତ୍ର !

ରଙ୍ଗିଲି— ଶାରୀରିକ ବ୍ୟାଧିପରି ଏହାର କ'ଣ କୌଣସି ପ୍ରତିକାର ଅଛି ?

ଅର୍ଜ୍ଜୁନ—ନିଶ୍ଚୟ ଅଛି । ଧର, ଜଣେ ମୋତେ ଘୃଣା କରୁଛି, ମୁଁ ଯଦି ତାହାକୁ ଘୃଣା ନ କରି ଭଲପାଏ—ଜଣେ ମୋତେ ମାରୁଛି, ମୁଁ ଯଦି ଓଲଟି ତାକୁ ନ ମାରି କୁଣ୍ଢାଇ ପକାଏ, ତା ହେଲେ କ'ଣ ସେ ମୋତେ ଭଲ ନ ପାଇ—କୁଣ୍ଢାଇ ନ ପକାଇ ସ୍ଥିର ରହି ପାରିବ ? ତୁମେ ଫେରି ଚାଲ, ନିଶ୍ଚୟ ଦେଖିବ ସଙ୍ଗାତ ଅନୁତପ୍ତ ହୋଇଥିବେ ଆଉ ମା, ମାମୁଁ ନିଜ ନିଜର ଭୁଲ ବୁଝି ପାରି ଆଖି ପାଣିରେ ମେଦିନୀ ତିନ୍ତାଉଥିବେ ।

ରଙ୍ଗିଲି—ପ୍ରିୟତମ ! କି ଉଦାରଭାବ ତୁମ୍ଭର !

ଅର୍ଜ୍ଜୁନ—ବୀରଭାଇ ଆଜି କେଉଁଆଡ଼େ ଯାଇଛି ? ଏତେବେଳଯାଏ ଦେଖାନାହିଁ କାହିଁକି ? ଏହି ବୀରଭାଇର କଥା ତ ଶୁଣିଛ ପ୍ରିୟେ ! ସେ କେଡ଼େ ନରପିଶାଚ ନ ଥିଲା—ନିଜ ହାତରେ କେତେ କେତେ ନରହତ୍ୟା ନ କରିଛି; କିନ୍ତୁ ଆଜି ଦେଖ, ସେ କରୁଛି କ'ଣ ? —ପରପାଇଁ ପ୍ରାଣ ଉତ୍ସର୍ଗ କରିଦେଇଛି—ଆମ୍ଭମାନଙ୍କର ଶତ୍ରୁ ବର୍ତ୍ତମାନ ତାର ଏକମାତ୍ର ଶତ୍ରୁ ହୋଇଛି ।

[ ବୀରେନ୍ଦ୍ର ପ୍ରବେଶ କରି ]

ବୀରେନ୍ଦ୍ର—କାହା ହେତୁ ଏ ସମସ୍ତ ? ଚୈତନ୍ୟଦେବ ନ ଥିଲେ, ଜଗାଇ ମାଧାଇଙ୍କ ଚୈତନ୍ୟୋଦୟ ହୋଇଥାନ୍ତା କିପରି ?

ଅର୍ଜ୍ଜୁନ—ଏତେବେଳଯାଏ କେଉଁଠି ଥିଲ ଭାଇ ?

ବୀରେନ୍ଦ୍ର—ମୁଁ ଆଜି ଟିକିଏ ସେ ଗାଁ ଆଡ଼କୁ ଯାଇଥିଲି ।

ଅର୍ଜ୍ଜୁନ—ସେ ଗାଁର ଅନେକ ଲୋକ ପରା କଟକରେ ଥାଆନ୍ତି ? ସମ୍ବାଦ କିଛି ପାଇଲ ନାହିଁ ?

ବୀରେନ୍ଦ୍ର—ପାଇଛି । ଚାଲ, ଖାଉଁ ଖାଉଁ କହିବି ।

ଅର୍ଜ୍ଜୁନ—କାହିଁକି, ଆଗେ କହୁନାହଁ ?

ବୀରେନ୍ଦ୍ର—ମୋତେ ଯେ ଭାରି ଭୋକ କଲାଣି ।

ଅର୍ଜ୍ଜୁନ—ନେନେ ଶୀଘ୍ର ଆସିଯାଅ ! ଚାଲ ପ୍ରିୟେ !

[ଅର୍ଜ୍ଜୁନ ଓ ରଙ୍ଗିଲି ଚାଲିଗଲେ]

ବୀରେନ୍ଦ୍ର—ଦୁଃସମ୍ବାଦ ପ୍ରକାଶ କରନ୍ତୁ କିପରି ?—ହାୟ ! ହାୟ ! ଶେଷକୁ ଗୋବିନ୍ଦ ବିଦ୍ୟାଧରଙ୍କ ପରି ମହାଜନ ଏହି ନୀଚ-କାର୍ଯ୍ୟ ସ୍ୱହସ୍ତରେ ସମ୍ପାଦନ କଲେ ?—ନ କରିବେ ବା କିପରି ? ରକ୍ତମାଂସର ଶରୀର ଧାରଣ କରି ପୁତ୍ର-ହତ୍ୟା କିଏ ସହ୍ୟ କରିପାରେ—ପୁଣି ଅର୍ଜ୍ଜୁନ ପରି ପୁତ୍ରର ହତ୍ୟା ? ହାୟ ! ମୁଁ ଚଣ୍ଡାଳ କାହିଁକି ତାଙ୍କୁ ଗୋପନରେ ପୁତ୍ର ଜୀବିତ ଥିବା ସମ୍ବାଦ ପ୍ରଦାନ ନ କଲି ? ମୋର ଇଚ୍ଛା ଥିଲା, କିଛିଦିନ ପରେ ରାଜା ଅନୁତପ୍ତ ହେଲେ, ନନ୍ଦୁକୁ ନେଇ ଉପସ୍ଥିତ କରାନ୍ତି—ସମସ୍ତଙ୍କୁ ଅବାକ୍ କରାନ୍ତି; କିନ୍ତୁ ବିଧିର ବାଧା ସବୁ ପଣ୍ଡ କରି ଦେଲା । ଓଃ—

( ନେପଥ୍ୟେ ) ଆସ ଭାଇ !                    [ ବୀରେନ୍ଦ୍ରର ପ୍ରସ୍ଥାନ ]

—o—

## ଦ୍ୱିତୀୟ ଦୃଶ୍ୟ :—

( ଗଳିରାସ୍ତା )

[କଥରୁଦ୍ର ଦେବ ପ୍ରବେଶ କଲେ]

କଥରୁଦ୍ର—ଆହୁରି କଣ ଲେଖିଥିଲ, ବଉଳ—"ଏ ସଂସାରରେ ଯାଙ୍କୁ ଧ୍ରୁବତାରା ମନେ କରି ଜୀବନପୋତ ଚଳାଉଥିଲି,ସେ ଯେତେବେଳେ ବିଚଳିତ ହେଲେ, ତେତେବେଳେ ଆଉ କାହାକୁ ଲକ୍ଷ୍ୟ କରି ଚଳାଇବି ?—ଭୀଷଣତର ବିପଦର ସମ୍ମୁଖୀନ ହେବାଠାରୁ ଏହିଠାରେ ଭେଳା ବୁଡାଇଦେବା ଶ୍ରେୟସ୍କର ମନେ କଲି"—ହାୟ ବଉଳ ! କଣ କଲି ? ଅରେ ଭଲ ତୁମ୍ଭର ଅମୂଲ୍ୟ ଭେଳାକୁ ବୁଡ଼ାଇଦେବା ପୂର୍ବରୁ ମୋତେ ମନୋଭାବ ଜଣାଇଥାନ୍ତ—କାହିଁକି ଜଣାଇବ ? ତୁମେ ବେଶ୍ କରିଛ—ପୁଷ୍ପ କୀଟକୁ ଥରେ ଯେତେବେଳେ ଆଶ୍ରୟ ଦେଇଛି, ତେତେବେଳେ ତା'ର ପ୍ରତିଫଳ ନିଶ୍ଚୟ ସେ ଭୋଗ କରିବ । —ତୁମେ ସ୍ୱର୍ଗର ସ୍ନିଗ୍ଧ ଜ୍ୟୋତି, ଏ ପାପ-ସ୍ପର୍ଶରେ କଳଙ୍କିତ ହେବ କାହିଁକି ? ତୁମେ ମନ୍ଦାକିନୀର ସ୍ୱଚ୍ଛଧାରା, ଏ ମୃତ୍ତିକା ସ୍ପର୍ଶରେ ମଳିନ ହେବ କାହିଁକି ? ହାୟ ! ଏ' ସ୍ଥାନ ଦର୍ଶନ ମାତ୍ରେ କି ସ୍ମୃତି ଜାଗି ଉଠୁଛି ! ଏହି ସେହି କୋଳାହଳଶୂନ୍ୟ ନିର୍ଜନ ସ୍ଥାନ—ଏହି ସେହି ନିର୍ଦ୍ଦିଷ୍ଟ ସମୟ—ଏହିଠାରେ, ଏହି ସମୟରେ କେତେ କେତେ ନିର୍ଜନ ସାକ୍ଷାତ—କେତେ କେତେ ନିର୍ଜନାଳାପ ହୋଇ ଯାଇଛି—ବର୍ତ୍ତମାନ କିନ୍ତୁ, କାହିଁ ସେ ସବୁ ? ଦେବତା ନାହିଁ . ଶୂନ୍ୟ ମନ୍ଦିର ଯେପରି ଠିଆ ହୋଇଛି—ପ୍ରାଣ ନାହିଁ, ଜଡ଼-ପିଣ୍ଡ ଯେପରି ପଡ଼ି ରହିଛି ।

[ ଚାଲିଗଲେ । ବିପରୀତ ଦିଗରୁ ଗୋବର୍ଦ୍ଧନ ପ୍ରବେଶ କଲା ]

ଗୋବର୍ଦ୍ଧନ—ଅବଧାନ କଥା ମିଛ ହୋଇଛି—ଗୋବରର ନାମ ଚାଲି ଯାଇଛି—ଗୋବର୍ଦ୍ଧନର ସ୍ୱପ୍ନ ଭାଙ୍ଗି ଯାଇଛି । —ଏ କ'ଣ ଦେଖୁଛି ? ଏ' କ'ଣ ଦେଖୁଛି ? ରାଜ-ନଅରର ଏପରି ଦୁର୍ଦ୍ଦଶା କାହିଁକି ? ନିକଟରେ ଯେଉଁ ମନ୍ଦିରଟି ଥିଲା, ତାହା ଗଲା କେଉଁଆଡ଼େ ? ରୁହ—କି ଗୋଟିଏ ତୀବ୍ର ସ୍ୱର ଭାସି ଆସୁଛି—କଣ କହୁଛି—"ମାମୁଁ ଏ ସମସ୍ତ ତୁମ୍ଭର କୀର୍ତ୍ତି !" ମୋର କୀର୍ତ୍ତି !—କିଏ ତୁହ ? କିଏ ? ଏଁ ଏଁ—ଏ ଯେ କମଳା ! କମଳା ! କମଳା ! ଏ ତୋର କି ମୂର୍ତ୍ତି ? ଚକ୍ଷୁରେ ଯେପରି ବିଦ୍ୟୁତ୍ ଖେଳୁଛି—ଭାବ-ଭଙ୍ଗିରେ ପିଶାଚ ହାର ମାନୁଛି—ଯା ତୁ କମଳା—ଯା ଏଠୁ ଯା । ମୁଁ ଯେ ତୋର ମାମୁଁ—ମୋତେ ତୋର ସେପରି ମୂର୍ତ୍ତି ଦେଖା ନା ! ଏ କଣ—ଏ

କଣ କରୁଛି କମଳ ?—କମଳ ! କମଳ ! ସେ ଯେ ତୋର ମା—ତୁ ନିଜ ହାତରେ ତାକୁ ଜ୍ୱଳନ୍ତ ଅଗ୍ନି କୁଣ୍ଡକୁ ପେଲି ଦେଉଛୁ ? ଏ କି ଅଟ୍ଟହାସ—ଏ କି କରତାଳି ପୁଣି ?—ତୁ କି ପିଶାଚୀ ହୋଇଛୁ କମଳ ? ଏ କିଏ ?, ରକ୍ତାକ୍ତ କଳେବରରେ ଏହି ଭୀଷଣ ମୂର୍ତ୍ତି କିଏ ? ହସ୍ତରେ ଏ କି ଅଗ୍ନିମୟ ଦଣ୍ଡ ? ମୋତେ ହିଁ ଲକ୍ଷ୍ୟ କରି ସେ ଧାଇଁ ଆସୁଛି—(ସ୍ୱଗତ) ଏ' ଯେ ମହାରାଜ ?—ମହାରାଜ ! ମହାରାଜ ! ଓଃ—କେଉଁ ଆଡ଼େ ଯିବି—କେଉଁଆଡ଼େ ପଳାଇବି—ସବୁଆଡ଼େ ଯେ ଲେଲିହାନ ଅଗ୍ନି ଶିଖା ପ୍ରଜ୍ୱଳିତ--ସବୁଆଡ଼େ ଯେ ଭୀଷଣ ଅଗ୍ନିମୟ ଦଣ୍ଡ ପ୍ରସାରିତ !—କେଉଁଠି ଆଶ୍ରୟ ନେବି ?—କେମନ୍ତେ ରକ୍ଷା ପାଇବି ?                                    (ବେଗେ ପଳାୟନ)

[କଥରୁଦ୍ର ଦେବ ପ୍ରବେଶ କଲେ]

କଥରୁଦ୍ର—ମୋର ଯେ ଏ' ସ୍ଥାନ ଛାଡ଼ିଯିବାକୁ ମନ ବଳୁନାହିଁ—ବଢ଼ିଲ ! ବଢ଼ିଲ !

[ପଦ୍ମାର ଛୁରିକା ହସ୍ତେ ପ୍ରବେଶ]

ପଦ୍ମା—ହିଁ, ଏତେଦୂର—ପଦ୍ମାକୁ ଛାଡ଼ି ବଢ଼ିଲରେ ଆଶ୍ରୟ ?—ପଦ୍ମା କେବେ ଆଖି ଥାଉଁ ଥାଉଁ ଏହା ଦେଖି ପାରିବ ନାହିଁ—ଜୀବ ଥାଉଁ ଥାଉଁ ଏହା ସହିପାରିବ ନାହିଁ ! ଯେ ପଦ୍ମାର ଆଶ୍ରୟ ନିଏ—ତା'ର ଆଶ୍ରୟ ଏହି ଛୁରି ଅଗରେ—

[କଥରୁଦ୍ରଙ୍କୁ ଛୁରିକାଘାତ କଲା]

କଥରୁଦ୍ର—କିଏ ? କିଏ ସେ ? ଉଃ !—ଗୋ-ବ-ର୍ଦ୍ଧ-ନ !

ପଦ୍ମା—ଏ ଯେ 'ଗୋବର୍ଦ୍ଧନ' ବୋଲି ଡାକିଲା ? ଏ କ'ଣ ଗୋବର୍ଦ୍ଧନ ନୁହେଁ ? ତେବେ, ତେବେ କିଏ ? (ବସି ଦେଖି) ଏଁ ! ଏ' ଯେ ମହାରାଜ !—ମହାରାଜ !

କଥରୁଦ୍ର—(ନୀରବ)

ପଦ୍ମା—(ଉଠି) ମୁଁ କଣ କଲି ? —ନା, ଅନୁତାପର ସମୟ ବର୍ତ୍ତମାନ ନୁହେଁ—କେବଳ ପ୍ରତିହିଂସା ! ପ୍ରତିହିଂସା ! ଯାହାପାଇଁ ପଦ୍ମା ଆଜି ନାରୀର ନାରୀତ୍ୱ ବିସର୍ଜ୍ଜନ ଦେଇ—ଯାହାପାଇଁ ପଦ୍ମା ଆଜି ନର-ହନ୍ତ୍ରୀ, ରାଜ-ହନ୍ତ୍ରୀ ମଧ ହୋଇଛି, ତାହାର ରକ୍ତପାନ ନ କରିବାଯାଏ, ପଦ୍ମାର ତୃଷା କଦାପି ନିବାରିତ ହେବ ନାହିଁ !—ପଦ୍ମାଶ୍ରୟ ପ୍ରାର୍ଥୀ ଫଣୀ ବର୍ତ୍ତମାନ ଶୋଣିତ ପ୍ରାର୍ଥୀ—                                    (ବେଗେ ନିଷ୍କ୍ରାନ୍ତ ହେଲା)

[ବୀରେନ୍ଦ୍ର ପ୍ରବେଶ କରି]

ବୀରେନ୍ଦ୍ର—ଏହି ତ ମନ୍ତ୍ରୀ ମହାଶୟଙ୍କ ଘର ଦିଶିଲାଣି । ହଠାତ୍ ପିତା-ପୁତ୍ର ମିଳନରେ ବିପଦ ଘଟିପାରେ—ତେଣୁ ଦେଖା ହେବା ପୂର୍ବରୁ ପିତାଙ୍କୁ ପ୍ରସ୍ତୁତ କରାଇ ନେବା ଉଚିତ ।

(ଚାଲିଗଲା)

[ ଅର୍ଜ୍ଜୁନ ଓ ରଙ୍ଗିଲ କହୁ କହୁ ପ୍ରବେଶ କଲେ ]

ଅର୍ଜ୍ଜୁନ—ପ୍ରିୟେ ! ପ୍ରିୟେ ! ଏହା କଣ ସତ୍ୟ ?—ମନୁଷ୍ୟ-ସମାଜ ଏତେ ନୀଚ ହୋଇ ପାରେ ?

ରଙ୍ଗିଲ—ଏ'ତ କିଛି ନୁହେଁ—

ଅର୍ଜ୍ଜୁନ—ଥାଉ ତେବେ ପ୍ରିୟେ ଆଉ ଅଗ୍ରସର ହେବାକୁ ମନ ବଳୁନାହିଁ ।

ରଙ୍ଗିଲ—ଆସିବାକୁ ଉଚ୍ଛନ୍ନ ହେଉଥିଲ ମଣ୍ଡ ?

ଅର୍ଜ୍ଜୁନ—କିନ୍ତୁ, ଆଉ ସେ ଅଗ୍ରହ ନାହିଁ ।—ମୁଁ ଯେତେ ଯେତେ ଅଗ୍ରସର ହେଉଛି, ପ୍ରିୟେ ! ମନୁଷ୍ୟର ଜୀବନ କାହିଁକି ତେତେ ତେତେ ଜଟିଳ ବୋଧ ହେଉଛି—ସମାଜ କାହିଁକି ତେତେ ତେତେ କୁହେଳିକାମୟ ଦିଶୁଛି ?

ରଙ୍ଗିଲ—ଆହୁରି ଭିତରକୁ ଚାଲନ୍ତୁ—ଯାହା ଶୁଣିଲେ ସେ ତ କିଛି ନୁହେଁ ।

ଅର୍ଜ୍ଜୁନ—ନା ପ୍ରିୟେ ! ପ୍ରୟୋଜନ ନାହିଁ ! ମୁଁ ଭୁଲ କହିଥିଲି ଯେ, ମନୁଷ୍ୟ ପ୍ରକୃତିର ସର୍ବୋତ୍କୃଷ୍ଟ ସୌନ୍ଦର୍ଯ୍ୟ ।—ଚାଲ, ତୁମ୍ଭର ସେହି ନିର୍ଜନ ସ୍ଥାନକୁ ଫେରି ଚାଲ । ସେଠାରେ ପ୍ରକୃତିର ଶୋଭା ଦେଖୁ ଦେଖୁ, ପ୍ରକୃତିର ସମ୍ପଦ ଭୋଗ କରୁ କରୁ— ଜୀବନର ଶେଷାଂଶ ଆନନ୍ଦରେ କଟାଇ ଦେବା ।

ରଙ୍ଗିଲ—ନା, ପ୍ରାଣେଶ୍ୱର—ଆସିଛନ୍ତି ଯେତେବେଳେ, ପିତାଙ୍କୁ ଦର୍ଶନ ନ କରି ଫେରିବାଟା କଦାପି ଉଚିତ ହେବ ନାହିଁ—ପୁଣି ତାଙ୍କର ଏପରି ଶୋକ ସମୟରେ ତୁମ୍ଭେ ହିଁ ଯେ ଏକମାତ୍ର ସାନ୍ତ୍ୱନା ।

ଅର୍ଜ୍ଜୁନ—ଭୁଲ ଭୁଲ, ପ୍ରିୟେ ! କେହି କାହାର ନୁହନ୍ତି—ସମସ୍ତେ ଦୁଇ ଦିନର ।—ଆଜି ଯାହାକୁ ସାନ୍ତ୍ୱନାର କାରଣ ବୋଲି ମନେ କରୁଛ, କାଲି ସେ ମହାନ୍ ଅଶାନ୍ତିର କାରଣ ହୋଇ ପଡ଼ିବ । ମୋର ସଙ୍ଗାତ—ମୋର ମା—ମୋର ଭଉଣୀ—ଆଜି କ'ଣ ସେମାନେ ମୋର ଅଛନ୍ତି; ମୋର ସାନ୍ତ୍ୱନାର କାରଣ କିଛି ଅଛି ?—ସେମାନେ ଅମରଧାମରେ, ଶାନ୍ତିନିକେତନରେ—ମୁହିଁ ମର୍ତ୍ତ୍ୟ ଧାମରେ—ଦୁଃଖାର୍ଣ୍ଣବରେ । ବାବା ଜାଣନ୍ତେ, ମୁଁ ମୃତ—ସୁତରାଂ ନିଶ୍ଚିନ୍ତ ହୋଇଛନ୍ତି, କାରଣ ମୋତେ ପାଇ ଯେବେ ପୁଣି ହରାନ୍ତି—ହରାଇବେ ତ ଦିନେ ନିଶ୍ଚୟ—ତେବେ ତାଙ୍କର କେବଳ ଅଶାନ୍ତି ବଢ଼ିବା ସାର ହେବ ସିନା ?

ରଙ୍ଗିଲ—ଆପଣ କ'ଣ ସବୁ ବକୁଛନ୍ତି ?

ଅର୍ଜ୍ଜୁନ—କଳ୍ପନା ହିଁ କିଛି—ଯାହା ବୁଝିଛ ତାହା ହିଁ କହୁଛ ।

ରଙ୍ଗିଲା—( ପାଣ୍ଡୁଙ୍କୁ ଦେଖି ) ଏ କ'ଣ ? ଏଠାରେ କେତୋଟାଏ କ'ଣ ପଡ଼ିଛି ? ଏ' ଯେ ମନୁଷ୍ୟ ମୂର୍ତ୍ତି ! (ନିକଟକୁ ଯାଇ) ହାୟ ! ହାୟ ! ଏ ଯେ ମୃତ ?

ଅର୍ଜ୍ଜୁନ—ମୃତ୍ୟୁ ! ମନୁଷ୍ୟ ମୂର୍ତ୍ତି ! ସ୍ୱେତ୍ତାରେ ପଡ଼ି ମରିଛି – ହାୟ ! ହାୟ ! ଏହି କି ମନୁଷ୍ୟ ହୃଦୟ ? ଏହି କି ମନୁଷ୍ୟ-ସମାଜ ? କୋଟି କୋଟି ପ୍ରାଣୀ ଜୀବିତ ଅଛି ଥାଉ—ଯିଏ ଲକ୍ଷ ପ୍ରାଣୀ ସୁଖ-ସମ୍ଭୋଗରେ ଜୀବନ ଯାପନ କରୁ କରୁ କେତୋଟିଏ ପ୍ରାଣ ଅଛି— ସେମାନଙ୍କର ଭାଇ ଅଛି, ନିଃସହାୟ, କ୍ଷୁଧାର୍ତ୍ତ ଦ୍ୱାରରୁ—ଜଘନ୍ୟ ଭାବେ ରାସ୍ତାରେ ପଡ଼ି, ପଚି ସଢ଼ି ଯାଉଛି, କାହାର ଭ୍ରୂକ୍ଷେପ ମଧ୍ୟ ନାହିଁ ?

ରଙ୍ଗିଲା—(ପାଣ୍ଡୁଙ୍କୁ ଯାଇ ଦେଖି) ପ୍ରାଣେଶ୍ୱର ! ପ୍ରାଣେଶ୍ୱର ! ଏ'ଯେ କଥଞ୍ଚିତ୍ ଦେବ ।

ଅର୍ଜ୍ଜୁନ—(ବସିପଡ଼ି) କଥଞ୍ଚିତ୍ ଦେବ ? ମହାରାଜ !—ନିର୍ମଳର ବିଗୀବିଧାତା ଆଜି ଏପରିଭାବେ ଧୂଳିରେ ଲୁଣ୍ଠିତ !—ଯାହାଙ୍କର ଶୟନମନ୍ଦିରର ସତର୍କ ପ୍ରହରୀ-ବେଷ୍ଟିତ ହର୍ମ୍ମ୍ୟ ଅଟ୍ଟାଳିକାରେ ନିଦ୍ରାରେ—ଶୟନ ରଚନା ସୁକୋମଳ ଦୁଗ୍ଧ-ଶଯ୍ୟାରେ ନିରୂପିତ —ସେ ଆଜି ଧୂଳିରେ ଧୂସରିତ—ନୃଶଂସଭାବେ ପଥଭ୍ରଷ୍ଟ ପାନ୍ଥ ତୁଲ୍ୟ ନିହତ ! ହାୟ ମନୁଷ୍ୟ ! ଏହି କି ତୁମ୍ଭର ବିବେକ ? ଏହି କି ତୁମ୍ଭର ମନୁଷ୍ୟତ୍ୱ ? ତୁମ୍ଭର ମଣିକର ମଣି, ତୁମ୍ଭର ହୃଦୟର ହାର, ତୁମ୍ଭେ ପାଦତଳେ ନିକ୍ଷେପ କରିଛ—ପାଦ ଦଳନରେ ନିକ୍ଷେପିତ କରୁଛ ! ନା ପ୍ରିୟେ, ଆଉ ମୁଁ ଅଗ୍ରସର ହେବାକୁ ଚାହେଁନା—ମୋର ନୟନାକାଶ ଘନାବୃତ କରିବାକୁ ଚାହେଁନା । ଫେରି ଚାଲ, ତୁମ୍ଭର ସେହି ସ୍ଥାନ ପ୍ରକୃତିରେ ପ୍ରକୃତିର ଶ୍ରେଷ୍ଠ ସୌନ୍ଦର୍ଯ୍ୟ-- ସେହିଠାରେ ପ୍ରକୃତିରେ ପ୍ରକୃତିର ସର୍ବୋତ୍କୃଷ୍ଟ ଲୀଳା !

[କେତେକ ରକ୍ଷୀଙ୍କର ବାଦ୍ୟରବରେ ପ୍ରବେଶ]

୧ମ ରକ୍ଷୀ—କାହାନ୍ତି ମହାରାଜ ? କେଉଁଆଡ଼େ ଗଲେ ?

ରଙ୍ଗିଲା—ଏହି ଯେ, ଏହି ଯେ ମହାରାଜ !

୧ମ ରକ୍ଷୀ—ଏଁ—ଏ କଣ ଦେଖୁଛୁ ?

ଅର୍ଜ୍ଜୁନ—ଆଉ ଦେଖିବ କ'ଣ ? ସ୍ୱାର୍ଥାନ୍ଧ ମାନବର ସ୍ୱାର୍ଥପରତାର ଏହା ହିଁ ସର୍ବୋତ୍କୃଷ୍ଟ ନିଦର୍ଶନ !

୧ମ ରକ୍ଷୀ—ଅରେ ଧର, ଧର; ଏହିମାନେ ମାରିଛନ୍ତି ।

୨ୟ ରକ୍ଷୀ—ଅରେ ସେଇ ତ ଗୋବର୍ଦ୍ଧନ ।

୩ୟ ରକ୍ଷୀ—ଦେଖୁନାହିଁ, ଦାସୀଟା ପଛ ସଙ୍ଗେ ସଙ୍ଗେ ଅଛି ।

୧ମ ରକ୍ଷୀ—ଠିକ୍, ଠିକ୍, ଗୋବର୍ଦ୍ଧନ ଆଉ ଦାସୀକୁ ଧରିବା ପାଇଁ ହୁକୁମ ଜାରି ହୋଇଥିଲା ।

୨ୟ ରକ୍ଷୀ—ଏଥିରେ ଧରା ପଡ଼ିଛନ୍ତି । ବେଶ ବଦଳେଇ ଆଉ କେତେଦିନ ଲୁଚି ରହିବ ବାପଧନ ?

୩ୟ ରକ୍ଷୀ—ହାୟ ! ହାୟ ! ମହାରାଜାଙ୍କୁ ଏପରି ଭାବେ ମାରଦେଲ ?

୧ମ ରକ୍ଷୀ—ମାର ଶଳାକୁ—ମାର ଶଳାକୁ (ପ୍ରହାର କଲେ)

୨ୟ ରକ୍ଷୀ—ମାର ଶାଳୀକୁ—ମାର ଶାଳୀକୁ (ପ୍ରହାର କଲେ)

ରଙ୍ଗିଲା—ତୁମ୍ଭେମାନେ ଏ କ'ଣ କରୁଛ ? ଆମ୍ଭେମାନେ ଯେ—

ଅର୍ଜ୍ଜୁନ—କିଛି ଆପତ୍ତି କରନା; ପ୍ରିୟେ ! ମନୁଷ୍ୟ ହିଁ ଯେ ପଶୁରୁ ଅଧମ !

୧ମ ରକ୍ଷୀ—ପଶୁରୁ ଅଧମ—ଦେଦିଛି ଧମାଧମ୍ ! [ପୁଣି ପ୍ରହାର କଲେ]

ରଙ୍ଗିଲା—ହାୟ ! ହାୟ ! ଏହା ହିଁ କପାଳରେ ଥିଲା ?

ରକ୍ଷୀଗଣ—ଚାଲ୍—ଚାଲ୍—

[ ଶବ-ଦେହ ବହନ ପୂର୍ବକ ଉଭୟଙ୍କୁ ପ୍ରହାର କରୁ କରୁ ଘେନିଗଲେ ]

—o—

ତୃତୀୟ ଦୃଶ୍ୟ :—

(ଶୟନ-କକ୍ଷ)

[ ରାଣୀ ରୋଗଶଯ୍ୟାରେ ଶାୟିତା ]

ରାଣୀ—କଥ କାହିଁ ଗୋବିନ୍ଦ ? ଏତେ ରାତି ହେଲାଣି, ଫେରୁନାହିଁ କାହିଁକି ? ତୁମେ ଲୋକ ପଠାଇନ୍ତ ତ ?

ଗୋବିନ୍ଦ—ପଠାଇଛୁ, ମା—ଆପଣ ସ୍ଥିର ହେଉନ୍ତୁ—ସେ ଏହିକ୍ଷଣି ଫେରିବେ । ବୁଲୁ ବୁଲୁ ବୋଧହୁଏ [ କମଳା କଥା ମନେ ପଡ଼ିବାରୁ ରହିଯାଇ ବହୁକ୍ଷଣାନ୍ତ ଆତ୍ମସଂମ୍ବରଣ କରିବା ] ଦୂରକୁ କେଉଁଠାକୁ .ଆଜି ବାହାର ଯାଇଥିବେ ।—ଏହିକ୍ଷଣି ଫେରିବେ—କିଛି ଭୟ କରନ୍ତୁ ନାହିଁ ।

ରାଣୀ—ଭୟ କରିବି ନାହିଁ ?—ସେହି ପୁତ୍ର-ହନ୍ତା ଯେ ଅଦ୍ୟାପି ଜୀବିତ ଅଛି—ଓଃ ହୋଃ !

ଗୋବିନ୍ଦ—ଅଉ ବେଶୀ ଦିନ ନୁହେଁ ମା !—ଯେପରି ବନ୍ଦୋବସ୍ତ ହୋଇଛି, ସେଥିରେ ଖୁବ୍ ଶୀଘ୍ର ଧରାପଡ଼ିବାର ସମ୍ଭାବନା ।

ରାଣୀ—କିନ୍ତୁ ମୋର କଲୁକୁ ତ ଫେରପାଇବାର ସମ୍ଭାବନା ନାହିଁ, ଗୋବିନ୍ଦ ?—କଲୁ କଲୁ—(ଅଶ୍ରୁ ବୁହାଇଲେ)

ଗୋବିନ୍ଦ—ମା ! ମା ! ଆପଣ ଏପରି ଅଧୀର ହେଲେ, ସନ୍ତାନମାନେ ଆପଣଙ୍କର ଧୈର୍ଯ୍ୟଧରି ରହିବେ କିପରି ?

ରାଣୀ—ଆଉ ଲଜ୍ଜା ଦିଅନା, ଗୋବିନ୍ଦ—ଶିଖାଅ, ଶିଖାଅ, କିପରି ଧୈର୍ଯ୍ୟ ଧରିବାକୁ ହୁଏ—ଏ' ଭଳି ବୃଦ୍ଧ ବୟସରେ, ସ୍ତ୍ରୀ-ପୁତ୍ର-କନ୍ୟାହୀନ ହୋଇ—ସଂସାରର ଯାବତୀୟ ସୁଖ-ଶାନ୍ତି ଶୂନ୍ୟ ହୋଇ, ପର ସେବାରେ କିପରି ମନପ୍ରାଣ ଢାଳିବାକୁ ହୁଏ—ନିଜର କର୍ତ୍ତବ୍ୟ ପାଳନରେ କିପରି ଏକନିଷ୍ଠ ହେବାକୁ ହୁଏ !—ଗୋବିନ୍ଦ ! ଗୋବିନ୍ଦ ! ତୁମ୍ଭେ ମନୁଷ୍ୟ, ନା ଦେବତା ?—ତୁମ୍ଭଙ୍କୁ ମୋ ପ୍ରଣାମ—

ଗୋବିନ୍ଦ— ମା ! ମା ! ସନ୍ତାନପ୍ରତି ଏ'କି ଅବୈଧାଚରଣ କରୁଛନ୍ତି ? ସନ୍ତାନକୁ କ୍ଷମା କରନ୍ତୁ, ମା ! (ପ୍ରଣତ ହେଲେ)

ରାଣୀ—(ଉଠାଇ) କୁହ, କୁହ, ଗୋବିନ୍ଦ ! ତୁମେ ମୋତେ କ୍ଷମା କରିଛ ତ ? ତୁମ୍ଭପ୍ରତି ମୁଁ ଯେଉଁ ଅବୈଧାଚରଣ କରିଥିଲି, ତା' ପାଇଁ ମୋ ପ୍ରତି ତୁମ୍ଭର କୌଣସି କ୍ଷୋଭ

ଗୋବିନ୍ଦ—ମା ! ମା ! ଏ କଣ କହୁଛନ୍ତି ? ସନ୍ତାନର କି ମା ପ୍ରତି କେବେ କ୍ରୋଧହୁଏ ? ମା ବରଂ ସନ୍ତାନକୁ ଯେତିକି ମାରେ ସନ୍ତାନ ମା'କୁ ସେତିକି କୁଣ୍ଢାଇ ଧରେ ।— ତା'ପରେ ମା ଦୋଷୀ-ପ୍ରତି ବିଚାରକର ଯାହା କର୍ତ୍ତବ୍ୟ, ତାହା ହିଁ ତ ଆପଣ କରିଥିଲେ ।

ରାଣୀ—ନା, ନା, ଗୋବିନ୍ଦ—ପୁତ୍ର-ଶୋକାତୁର ହୋଇ ମୁଁ ଘୋର ଅନ୍ୟାୟ କରିବାକୁ ବସିଥିଲି; ତାହା ଭାବିଲାବେଳକୁ ଦେହ କଣ୍ଟକିତ ହେଉଛି !—ସମ୍ପଦେ, ବିପଦେ ଯେ ମୋର ପ୍ରକୃତ ବନ୍ଧୁ, ତାହାର—

ଗୋବିନ୍ଦ—ମା, ସ୍ଥିର ହେଉନ୍ତୁ—ଅତୀତ-ବିଷୟ ଚିନ୍ତାରେ ମନ ବ୍ୟାକୁଳ କରିବାର କି ପ୍ରୟୋଜନ ? ଆପଣ ଯାହା କରିଥିଲେ, ତାହା ମନୁଷ୍ୟମାନଙ୍କ ପକ୍ଷେ ସ୍ୱାଭାବିକ ।

ରାଣୀ—ନା, ଗୋବିନ୍ଦ ! ଅସ୍ୱାଭାବିକ—ପ୍ରକୃତ ମନୁଷ୍ୟ ଯେ—ହିତାହିତ ଜ୍ଞାନ ଯା'ର ଅଛି ସେ ପୁତ୍ର-ଶୋକରେ ମଧ୍ୟ କଦାପି କର୍ତ୍ତବ୍ୟ-ଜ୍ଞାନଶୂନ୍ୟ ହୁଏନାହିଁ—ସ୍ୱାର୍ଥ ଦୃଷ୍ଟିରେ କେବଳ ନିର୍ଦ୍ଦୋଷର, ପୁଣି ଉପକାରୀର ମଧ୍ୟ ପ୍ରାଣନାଶ କରିବାକୁ ଧାଇଁଯାଏ ନାହିଁ— ସେ ଆତ୍ମବଳୀ ଦେଇ ଅପକାରୀର ସୁଦ୍ଧା ଉପକାର କରେ, ପୁତ୍ର-ଶୋକ ଭୁଲିଯାଇ ପୁତ୍ର-ହନ୍ତାକୁ ସୁଦ୍ଧା ସାଦରେ ଆଲିଙ୍ଗନ କରେ ।

ଗୋବିନ୍ଦ—ମା ! ସେ ସବୁ ବୃଥା-ଚିନ୍ତାରେ ମନ ଏତେ ବିଚଳିତ କରନ୍ତୁ ନାହିଁ—ଯେପରି ଦୁର୍ବଳ ଆପଣ—ସ୍ୱଳ୍ପ ମାନସିକ ଉତ୍ତେଜନାରେ—

[ ଜନୈକ ରକ୍ଷୀର ପ୍ରବେଶ ]

ରକ୍ଷୀ—ସର୍ବନାଶ, ହାଆଜ୍ଞେ !

ଗୋବିନ୍ଦ—( ଅନୁଚ୍ଚ ସ୍ୱରରେ ) କି ସର୍ବନାଶ ?—ଆସ୍ତେ—ଆସ୍ତେ—

ରାଣୀ—କି ସର୍ବନାଶ, କହ ରକ୍ଷକ, ? କଅଣ ନାହିଁ ମୋର ? କଅଣ ମୋର କିଛି ହୋଇ ନାହିଁ ତ ?

ଗୋବିନ୍ଦ—ଏ'କି ଅମଙ୍ଗଳ-ଚିନ୍ତା, ମହାରାଣୀ ? ସେ ଦୀର୍ଘାୟୁ ହେଉନ୍ତୁ !—ଚାଲ ତେଣିକି ।

ରକ୍ଷୀ—ଆଉ ସିବ କଣ ସାଆଜ୍ଞେ ! ମହାରାଜ ଖୁନ୍ ହୋଇଛନ୍ତି !

ରାଣୀ—'ମହାରାଜ ଖୁନ୍ ହୋ...ଛନ୍ତି'—କଅଣ ମୋର ଏ' ସଂସାରରେ ଆଉ ନାହିଁ ?

[ ତଳେ ଗଡ଼ି ପଡ଼ି ମୃତ୍ୟୁବରଣ କଲେ ]

ଗୋବିନ୍ଦ—ମହାରାଜ ଖୁନ ! (ହତାଶ ଭାବରେ)

ରକ୍ଷୀ—ଆଜ୍ଞା, ପ୍ରଭୁ !

ଗୋବନ୍ଦ—ଅସମ୍ଭବ—ଅସମ୍ଭବ—ତୁ ମିଥ୍ୟା କହୁଛୁ—ତୁ ରାଜାଙ୍କର ନାମରେ ମିଥ୍ୟା ରଟନା କରୁଛୁ—ତୋର ମିଥ୍ୟା ସମ୍ବାଦ-ଦାନରେ ରାଜ-ମାତାଙ୍କର ଅଧୁନା ଏ ଦୁର୍ଦ୍ଦଶା, ତୋର—ଶାସ୍ତି—(ବେକ ଚିପିଧରି)

ରକ୍ଷୀ—ଦୋହାଇ, ଦୋହାଇ, ସାଆନ୍ତେ—ଖୁନୀଙ୍କୁ ଯେ ଆମ୍ଭେମାନେ ଧରି ଆଣିଛୁ ।

ଗୋବନ୍ଦ—ଖୁନୀ ଧରାପଡ଼ିଛି ? ତେବେ କ'ଣ ଏହା ସତ୍ୟ ?—ମହାରାଜା—ଖୁନ୍ !—କଥ ମୋର ଇହଧାମରେ ଆଉ ନାହିଁ ! (ରହି) ରକ୍ଷକ ! କାହିଁ ସେ ଖୁନୀ ? କିଏ ସେ ଖୁନୀ ?

ରକ୍ଷୀ—ଆଉ କିଏ ହବ ସାଆନ୍ତେ—ଯା ନାରେ ହୁଲିଆ ଜାରି ହୋଇଛି ।

ଗୋବନ୍ଦ—ତେବେ, ସେହି ପାଷାଣ୍ଡ—ଗୋବର୍ଦ୍ଧନ ?

[ କ୍ରୋଧରେ ସ୍ଫୀତବକ୍ଷ ହେଲେ ]

ରକ୍ଷୀ—ଆଜ୍ଞା, ସାଆନ୍ତେ—ସେଇ ମାଇକିନିଆଟା ବି ସାଙ୍ଗେ ସାଙ୍ଗେ ଥିଲା, ଧରାପଡ଼ିଛି ।

ଗୋବନ୍ଦ—ଘେନିଆ ଉଭୟଙ୍କୁ ଏହି ସ୍ଥାନକୁ—ନା, ନା ରକ୍ଷୀ ! ଏହି ଆଦେଶପତ୍ର ଲେଖି ଦେଉଛି ଶୀଘ୍ର ସେନାପତିଙ୍କୁ ଦେ—ନରାଧମମାନଙ୍କର ଛିନ୍ନ ମସ୍ତକ ଏହିକ୍ଷଣି ମୋତେ ଦେଖାଇବାକୁ ହେବ ।

ରକ୍ଷୀ—ଯେ ଆଜ୍ଞା, ସାଆନ୍ତେ !

ଗୋବନ୍ଦ—(ରାଣୀଙ୍କ ଆଡ଼େ ଚାହିଁ) ମା ! ମା !—ଓଃ ହୋଃ !
(ନେପଥ୍ୟେ)—ବୋଲ ହରି—ହରି ବୋଲ !

[ବେଗେ ବାହାରି ଗଲେ]

—o—

ଚତୁର୍ଥ ଦୃଶ୍ୟ :—

(ପ୍ରାସାଦ-ସମ୍ମୁଖ) [ବୀରେନ୍ଦ୍ର ପ୍ରବେଶ କଲେ]

ବୀରେନ୍ଦ୍ର—କାହାନ୍ତି ମନ୍ତ୍ରୀ ମହାଶୟ ?—କେଉଁଠାରେ ଅଛନ୍ତି ? ଚାହାଁଇ ଦେଲେ ସୁଦ୍ଧା, ରକ୍ଷୀମାନେ ତ ଚାହାଁନ୍ତୁ ନାହାନ୍ତି—ମୋତେ ବିଶ୍ୱାସ କରୁ ନାହାନ୍ତି !—କ'ଣ କରିବି ?—ମୋର ପ୍ରାଣପ୍ରିୟତମ, ଏତେ ଆଶ୍ୱାସ-ରକ୍ଷିତ ନୌକାଟି କ'ଣ କୂଳରେ ଲାଗୁ ଲାଗୁ ବୁଡ଼ିଯିବ ?—ଏହି ଯେ ମନ୍ତ୍ରୀ ମହାଶୟ !

[ଗୋବିନ୍ଦ ଶୋକ-ପରିଚ୍ଛଦ ଧାରଣ-ପୂର୍ବକ ପ୍ରବେଶ କଲେ]

ଗୋବିନ୍ଦ—ଆଜିଠାରୁ ମୋର ଛୁଟି—

ବୀରେନ୍ଦ୍ର—ମନ୍ତ୍ରୀ ମହାଶୟ ! ରକ୍ଷା କରନ୍ତୁ !—ରକ୍ଷା କରନ୍ତୁ ।

ଗୋବିନ୍ଦ—କିଏ ? କିଏ ? ବୀରେନ୍ଦ୍ର ! ତୁମେ ଜୀବିତ ଅଛ ? ଏ' ସଂସାରରେ ଅଛ ?—ଏତେଦିନ ଦେଖା ନ ଦେଇ ଆଜି ଦେଖା ଦେବାକୁ ଧାଇଁ ଆସିଲ କାହିଁକି ?—ଓଃ ହୋଃ କି ସ୍ମୃତି ଜାଗି ଉଠୁଛି—କି ବୃଶ୍ଚିକ-ଦଂଶନ ଅନୁଭବ କରୁଛି ! ଆଜିକୁ ଏକ ବର୍ଷ ଅତୀତ ହୋଇଗଲା, ଏ'ପରି ଦିନେ ତ କେବେ ଅନୁଭବ କରି ନ ଥିଲି ? ଆଜି ଏ'କି ଅନୁଭୂତି—ଅଞ୍ଜୁ ! ଅଞ୍ଜୁ ! ଓଃ ହୋଃ—

ବୀରେନ୍ଦ୍ର—ମନ୍ତ୍ରୀ ମହାଶୟ ! ଆଦେଶ ପ୍ରତ୍ୟାହାର କରି ଆପଣଙ୍କର ପୁତ୍ର ଓ ପୁତ୍ରବଧୂର ପ୍ରାଣ ରକ୍ଷା କରନ୍ତୁ !

ଗୋବିନ୍ଦ—କିଛି ଦୋଷ ନାହିଁ ତୁମ୍ଭର, ବୀରେନ୍ଦ୍ର ! ତୁମ୍ଭେ ତୁମ୍ଭର କର୍ତ୍ତବ୍ୟ-ପାଳନ କରିଅଛ—ଅତୀବ ନିର୍ମମ ସେ କର୍ତ୍ତବ୍ୟ ।—ତା'ର ଉପାସକ ବୋଲି, ଦେଖ, ପିତା ହୋଇ, ବୃଦ୍ଧ ହୋଇ ସୁଦ୍ଧା, ଏକମାତ୍ର ପୁତ୍ର ଓ କନ୍ୟାର ବିଚ୍ଛେଦ ଯନ୍ତ୍ରଣା ଅମ୍ଳାନ-ବଦନରେ ଅଦ୍ୟାବଧି ସହ୍ୟ କରିଅଛି, କିନ୍ତୁ ଏଣିକି ଆଉ ପାରିବି ନାହିଁ ।—ମୋର ଉଦ୍ଦେଶ୍ୟ, ବିଜ୍ରାନଳରେ ଭସ୍ମୀଭୂତ ହୋଇଛି !—ମୋର ଶକ୍ତି, ବାଷ୍ପସମାନ କେଉଁଆଡ଼େ ଅନ୍ତର୍ହିତ ହୋଇଛି ! ମୁଁ ବର୍ତ୍ତମାନ ତୃଣଠାରୁ ମଧ୍ୟ ଲଘୁ—ସାମାନ୍ୟ ଫୁତ୍କାର କର, ଦେଖିବ, କେଉଁ ଅଜ୍ଞାତ ଦୂରଦେଶକୁ ଉଡ଼ି ଗ୍ଭଲିଯିବି ।

ବୀରେନ୍ଦ୍ର—ମନ୍ତ୍ରୀ ମହାଶୟ ! ମୋତେ ଉନ୍ମାଦ ଜ୍ଞାନ କରନ୍ତୁ ନାହିଁ—ସେମାନେ ଜୀବିତ ଅଛନ୍ତି । କେବଳ ଆପଣ ଆଦେଶ କଲେ, ସେମାନେ ପ୍ରାଣଦଣ୍ଡରୁ ରକ୍ଷା ପାଇବେ ।

ଗୋବିନ୍ଦ—ମୋତେ ତେବେ କ'ଣ ଉନ୍ମାଦ ଜ୍ଞାନ କରିଛ ବୀରେନ୍ଦ୍ର ? କଦାପି ତା ମନେ କରନାହିଁ—ମୋର ବିବେକ ବୁଦ୍ଧି ସମସ୍ତ ଠିକ୍ ସେହିପରି ନିର୍ମଳ ଓ ଉଜ୍ଜ୍ୱଳ ରହିଅଛି—କେବଳ ଶକ୍ତି ନାହିଁ ! ବାର୍ଦ୍ଧକ୍ୟ ହେତୁ ନୁହେଁ, କିମ୍ବା ସାଂସାରିକ ସୁଖାଭାବ ହେତୁ ନୁହେଁ——ହେତୁ, ମୋର ଉଦ୍ଦେଶ୍ୟ ସାଧନର ସହସା ପଥାବରୋଧ । —

କିଏ ସେ ଅବରୋଧକାରୀ ? ସେହି କାଳସର୍ପ !—ଯା'ଙ୍କୁ ଦୁଧ ପିଆଇ, କୋଳରେ ଶୁଆଇ, ନିଜ-ଘରେ ବଢ଼ାଇଥିଲି ।—ବୀରେନ୍ଦ୍ର ବୀରେନ୍ଦ୍ର ! ଥରେ ଦେଖ ତ—ତୁମେ ଅତି ସୁଦକ୍ଷ ଘାତକ—ନବୀଧରର ଶିରଚ୍ଛେଦନ ସେମାନେ କରି ପାରିଲେ କି ନାହିଁ ?

ନରେନ୍ଦ୍ର ମନ୍ତ୍ରୀ ମହାଶୟ ! ମୋତେ ବିଶ୍ୱାସ କରନ୍ତୁ—ପୁତ୍ର ଆପଣଙ୍କର ଜୀବିତ ଅଛନ୍ତି ।

ଗୋବିନ୍ଦ—ଜୀବିତ ? ହାଃ-ହାଃ-ହାଃ—ତୁମେ ନିଶ୍ଚୟ ଉନ୍ମାଦ ହୋଇଯାଇଛ ।

ବୀରେନ୍ଦ୍ର—ବିଶ୍ୱାସ କରନ୍ତୁ ପ୍ରଭୋ !

ଗୋବିନ୍ଦ—ମୋତେ ଏତେ ଦୁର୍ବଳ-ମତି ମନେ କର ନା, ବୀରେନ୍ଦ୍ର ! ମୋର ବର୍ତ୍ତମାନ ସୁଦ୍ଧା ବେଶ୍ ବୋଧ-ଶକ୍ତି ଅଛି—ମୁଁ ଭଲ ବୁଝିପାରୁଛି ଯେ, ଏ' ସଂସାର ସଙ୍ଗେ ମୋର ତିଳେମାତ୍ର ସମ୍ବନ୍ଧ ନାହିଁ—ସମସ୍ତ ବନ୍ଧନ ଛିନ୍ନ ହୋଇଛି—ମୋର ସମସ୍ତ କର୍ତ୍ତବ୍ୟ ଶେଷ ହୋଇଛି—ଏହିଠାରେ ମୋର କୌଣସି ପ୍ରୟୋଜନ ନାହିଁ ।

ବୀରେନ୍ଦ୍ର—ଈଶ୍ୱରଙ୍କ ନାମରେ ଶପଥ କରି କହୁଛି, ପ୍ରଭୋ ! ପୁତ୍ର ଆପଣଙ୍କର ଜୀବିତ ଅଛନ୍ତି ।

ଗୋବିନ୍ଦ—ଜୀବିତ ଯଦି, କାହିଁ ସେ ? ହାଃ-ହାଃ—ମୋତେ ଭଣ୍ଡାଇ ପାରିଲ ନାହିଁ—ଏ ପ୍ରତାପରୁଦ୍ରଦେବଙ୍କ ମନ୍ତ୍ରୀକୁ ଭୁଲାଇବା କି ସହଜ କଥା ?

ବୀରେନ୍ଦ୍ର—ପ୍ରଭୋ—ସେ ଯେ ଶ୍ମଶାନ-ଭୂମିରେ !

ଗୋବିନ୍ଦ—ଉନ୍ମାଦ ! ଏତିକ କଣ ବୁଝି ପାରୁନାହିଁ ? ପ୍ରାଣାନ୍ତେ ମନୁଷ୍ୟର ଶବ ଯେ ସେହିଠାକୁ ଯାଏ, କିନ୍ତୁ ମୁଁ ପ୍ରାଣ ଥାଉଁ ଥାଉଁ ଯାଉଛି—କାରଣ ଏ କର୍ତ୍ତବ୍ୟହୀନ-ପ୍ରାଣ ମୃତ ପ୍ରାଣ ସଙ୍ଗେ ସମାନ ।

ବୀରେନ୍ଦ୍ର—(ବ୍ୟାକୁଳ ହୋଇ) ପ୍ରଭୋ ! ରକ୍ଷିମାନେ ଯେ ଗୋବର୍ଦ୍ଧନ ଓ ପଦ୍ମା ଭ୍ରମରେ ଆପଣଙ୍କର ପୁତ୍ର ଓ ପୁତ୍ରବଧୂଙ୍କୁ ନାଇଅଛନ୍ତି, ବିଶ୍ୱାସ କରନ୍ତୁ, ସେମାନେ ଜୀବିତ ଅଛନ୍ତି—ଶୀଘ୍ର ତାଙ୍କୁ ରକ୍ଷା କରନ୍ତୁ !

ଗୋବିନ୍ଦ—ଠିକ୍ କହୁଛ ବୀରେନ୍ଦ୍ର ? ଏହା କଣ ସତ—ମୋର ପୁତ୍ର-ପୁତ୍ରବଧୂ ଜୀବିତ ଅଛନ୍ତି ?—ନା, ନା, ମିଥ୍ୟାକଥା—ମିଥ୍ୟାକଥା ଏତେ ଆନନ୍ଦ ଯେ, ଅସମ୍ଭବ—ଅସମ୍ଭବ !

ବୀରେନ୍ଦ୍ର—ପ୍ରଭୋ ! ବିଶ୍ୱାସ କରନ୍ତୁ—(ଆଣ୍ଠୁ ମାଡ଼ି ଅନୁନୟ)

ଗୋବିନ୍ଦ—ସତ କହୁଛ ବୀରେନ୍ଦ୍ର ? ସେମାନେ ଜୀବିତ ଅଛନ୍ତି ? —ମୋର ଅଜୁ ଅଛି ? ମୋର ପୁତ୍ରବଧୂ ଅଛି ? —କାହିଁ ? କାହିଁ ? ଦେଖାଅ—ଦେଖାଅ—

ବୀରେନ୍ଦ୍ର—ଏହି ଆଡ଼କୁ ଶୀଘ୍ର ଆସନ୍ତୁ ।

ଗୋବିନ୍ଦ—କେଉଁଆଡ଼କୁ ? ମୋତେ ଧରି ନେଇ ଚାଲ, ମୁଁ ଯେ ପଥ ଦେଖି ପାରୁ ନାହିଁ —

[ବେଗେ ପ୍ରସ୍ଥାନୋଦ୍ୟତ ହେବାକାଳେ
ମୁକୁନ୍ଦ ଦ୍ରୁତ ପ୍ରବେଶ କଲେ]

ମୁକୁନ୍ଦ—କାର୍ଯ୍ୟ ଶେଷ ପ୍ରଭୋ ! ସେମାନଙ୍କ ପାପ ରକ୍ତରେ ଏ' ପୁଣ୍ୟ ତରବାରି କଳଙ୍କିତ କରିବାକୁ ହୋଇନାହିଁ—ପାପିଷ୍ଠ ନିଜର ଶ୍ୱପ୍ରକ୍ଷୁରିକା ଘାତରେ ନିଜର ପ୍ରାଣତ୍ୟାଗ କରିଛି—ଧରୁ ଧରୁ ନରାଧମ ଆତ୍ମହତ୍ୟା କରି ସ୍ୱ-ପାପର ପ୍ରାୟଶ୍ଚିତ୍ତ କରିଛି ।

ବୀରେନ୍ଦ୍ର—ଓଃ ହୋଃ—ଏତେ କରି ସୁଦ୍ଧା ବଞ୍ଚାଇ ପାରିଲି ନାହିଁ ।—ଭାଇ ! ଭାଇ !
(ବେଗେ ପ୍ରସ୍ଥାନ କଲେ)

ଗୋବିନ୍ଦ—(କରୁଣ ସ୍ୱରରେ) ମୁକୁନ୍ଦ !

ମୁକୁନ୍ଦ—ଏତେ କାତର କାହିଁକି, ପ୍ରଭୋ ? ଆପଣ ତ ଯେ ଛିନ୍ନମସ୍ତକ ପର୍ଯ୍ୟନ୍ତ ଦେଖିବାକୁ ଇଚ୍ଛା ପ୍ରକାଶ କରିଥିଲେ !

ଗୋବିନ୍ଦ—ଓଃ ହୋଃ -- (ଅନିଯାଇ) କୁହ, ମୁକୁନ୍ଦ—ଚିତା ଜଳାଇଛି ତ ?

ମୁକୁନ୍ଦ—ଜାଳିବାର ଉପକ୍ରମ ହେଉଥିଲା ।

ଗୋବିନ୍ଦ—ଯାଅ, ଯାଅ ତେବେ ଶୀଘ୍ର—ଭୀମବେଗେ ଜାଳିବାର ବନ୍ଦୋବସ୍ତ କରିଦିଅ—ଆହୁରି କାଷ୍ଠ-ସଂଗ୍ରହ ନିମନ୍ତେ ଆଦେଶ କରିଦିଅ ।

ମୁକୁନ୍ଦ—ଏ' କି ଆଦେଶ ପ୍ରଭୋ ?

ଗୋବିନ୍ଦ – ଯାଅ, ଦ୍ୱିରୁକ୍ତି କରନା !                [ମୁକୁନ୍ଦର ଧୀରେ ଧୀରେ ପ୍ରସ୍ଥାନ]
ହାଃ-ହାଃ-ହାଃ—ଆଜଠୁଁ ଯେ ମୋର ଛୁଟି ! —ପୁଣି କାର୍ଯ୍ୟରେ ଲଗାଇବ, ଏତେ ସାହସ କା'ର ? ବୀରେନ୍ଦ୍ର ଗୋଟାଏ ଭୀଷଣ ଷଡ଼ଯନ୍ତ୍ର କରିଥିଲା; କିନ୍ତୁ ଈଶ୍ୱର ଦୟାମୟ ମୋତେ ଆଜି ରକ୍ଷାକଲେ ! ଏ' କ'ଣ—ତୁମ୍ଭେମାନେ ବିଦ୍ରୂପ କରୁଛ ଯେ ! ପୁତ୍ର-ବିନାଶରେ ମୁଁ ଆନନ୍ଦ ଅନୁଭବ କରୁଛି ବୋଲି ? —.କୃତ-ନିୟମର ବିରୁଦ୍ଧାଚରଣ କରୁଛି ବୋଲି ? ହାଃ-ହାଃ-ହାଃ—ତା' ହେଲେ ତୁମ୍ଭେମାନେ ଗୋବିନ୍ଦକୁ ଆଦୌ ଚିହ୍ନି ନାହଁ । ସେ ସମ୍ପୂର୍ଣ୍ଣ ପରିପୂର୍ଣ୍ଣ ପ୍ରାଣ—ଗଙ୍ଗବଂଶର ଅମଙ୍ଗଳ ଆଧେୟ, ସେ ସାମାନ୍ୟ ଆଧାର ମାତ୍ର—ପ୍ରାଣପକ୍ଷୀ ଉଡ଼ି ଚାଲି-ଯାଇଛି, ଏ ଜଡ଼-ପିଞ୍ଜରଟା କେବଳ ଏଠାରେ ପଡ଼ି ରହିଛି । —ଅଜୁ ସଙ୍ଗେ ଆଜି ମିଳନ ହୋଇଥିଲେ, କିଛିଦିନ ପୁଣି ଏ' ବିଶ୍ୱାସଘାତକ ସଂସାରରେ ରହିବାକୁ ପଡ଼ିଥାନ୍ତା—ମାୟାମମତାକର୍ଷଣ ଯୋଗୁଁ ନୁହେଁ, ପୁତ୍ର ପ୍ରତି ପିତାର କର୍ତ୍ତବ୍ୟାନୁରୋଧ ଯୋଗୁଁ, ମାତ୍ର ଏ ଜଡ଼-ପିଣ୍ଡ ଦ୍ୱାରା କି କାର୍ଯ୍ୟ ସାଧିତ ହୋଇ ପାରିଥାନ୍ତା ? ଯାଉ—ଚାଲ ମନ—ସେହି ଆଡ଼େ ଚାଲ, ଯେଉଁଆଡ଼େ ତୁମ୍ଭର ନିତ୍ୟାରାଧ୍ୟ ଦେବତାମାନେ ଚାଲିଯାଇଅଛନ୍ତି । —ଏ'ଠାରେ ସେମାନଙ୍କ ପ୍ରତି ତୋର ଯେଉଁ କର୍ତ୍ତବ୍ୟ ଥିଲା,

ସେଠାରେ ମଧ ସେମାନଙ୍କ ପ୍ରତି ତୋର ସେହି କର୍ତ୍ତବ୍ୟ ରହିବ—ସେମାନେ ସ୍ୱର୍ଗକୁ ଗଲେ, ତୋର ସ୍ୱର୍ଗରେ ସ୍ଥାନ—ନରକକୁ ଗଲେ ନରକରେ ସ୍ଥାନ !

[ପ୍ରସ୍ଥାନୋଦ୍ୟତ ହେବାକାଳେ ରଣଜିତ୍ ଓ କତିପୟ ପ୍ରଜାସହ ମୁକୁନ୍ଦଦେବଙ୍କର ପ୍ରବେଶ]

ସମସ୍ତେ—ଜୟ ମହାରାଜ ଗୋବିନ୍ଦ ବିଦ୍ୟାଧରଙ୍କ ଜୟ !

ଗୋବିନ୍ଦ—(କ୍ରୋଧେ) ଏ' କି ଆଚରଣ, ଭ୍ରାତୃଗଣ ?

ରଣଜିତ୍—ମହାରାଜ !—

ଗୋବିନ୍ଦ—ଏ' କି ସମ୍ବୋଧନ ଭାଇ ?—ଅଧମକୁ ରକ୍ଷାକର ଭାଇ ! ମହାଯାତ୍ରାକାଳେ ଏ'ପରି ସମ୍ବୋଧନ କରି, ଯନ୍ତ୍ରଣା ଦିଅନା ଭାଇ !

ରଣଜିତ୍—ମହାରାଜ ! ତେବେ ଆମ୍ଭମାନଙ୍କୁ ମଧ ଆପଣଙ୍କର ଅନୁଗାମୀ ହେବାକୁ ଦିଅନ୍ତୁ ।

ଗୋବିନ୍ଦ—ତୁମ୍ଭେମାନେ କାହିଁକି ମୋର ଅନୁଗାମୀ ହେବ ?—ସଂସାରରେ ଯେ ତୁମ୍ଭମାନଙ୍କର ଅନେକ କର୍ତ୍ତବ୍ୟ ଅଛି । —ବିଶେଷତଃ ତୁମ୍ଭମାନଙ୍କର ସ୍ତ୍ରୀ-ପୁତ୍ର, ଭାଇ-ବନ୍ଧୁ ପ୍ରଭୃତି ଜୀବିତ ଅଛନ୍ତି—ସେମାନେ ଯେ ତୁମ୍ଭମାନଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରନ୍ତି ।

ରଣଜିତ୍—ତେବେ ଆପଣ କିପରି ସଂସାର ତ୍ୟାଗ କରୁଛନ୍ତି ?—ଏକା ଆପଣଙ୍କ ଉପରେ ଯେ ଆମ୍ଭମାନଙ୍କର କୋଟି କୋଟି ପ୍ରାଣ ନିର୍ଭର କରୁଛି ।

ଗୋବିନ୍ଦ—ଭ୍ରାତୃଗଣ ! ସେହିପରି ନିର୍ଭରଶୀଳ—ସେହିପରି ପରମୁଖାପେକ୍ଷୀ ହୋଇ କ'ଣ ଚିରଦିନ ରହିଥିବ ?—ସ୍ୱାବଲମ୍ବନ କଣ ଶିକ୍ଷା କରିବ ନାହିଁ ! ପ୍ରକୃତ ମନୁଷ୍ୟତ୍ୱର ପରିଚୟ ଦେବାକୁ କଣ ଗର୍ବାନୁଭବ କରିବ ନାହିଁ ? ବର୍ତ୍ତମାନ ସୁଯୋଗ ମିଳିଛି, ଭ୍ରାତୃଗଣ ! ତୁମ୍ଭେମାନେ ମିଳିତ ହୁଅ—ରାଜମୁକୁଟକୁ କେବଳ ସାକ୍ଷୀ କରି, ସ୍ୱାୟତ୍ତ ଶାସନରେ ଯତ୍ନଶୀଳ ହୁଅ ।

ରଣଜିତ୍—ଏ' ବିଷୟରେ ଯେ ଅମ୍ଭେମାନେ ସମ୍ପୂର୍ଣ୍ଣ ଅନ୍ଧକାରରେ ପ୍ରଭୋ ! ପ୍ରଦୀପ ଧରି ପଥ ନ ଦେଖାଇଲେ, ଆମ୍ଭେମାନେ ଠିକ୍ ପଥରେ ଚାଲିବୁ କିପରି, କୁହନ୍ତୁ ?

ଗୋବିନ୍ଦ—ସେ ସାହାଯ୍ୟ କରିବାକୁ ମୁକୁନ୍ଦ ନିଶ୍ଚୟ ସକ୍ଷମ ହେବ ।

ରଣଜିତ୍—ମହାରାଜ ! ଏ ଦୀନ-ଦାସକୁ କ୍ଷମା କରନ୍ତୁ—ସେ ନିତାନ୍ତ ଦୁର୍ବଳ ଓ ଅକ୍ଷମ ।

ରଣଜିତ୍—ମହାରାଜ ! ଆମ୍ଭେମାନେ କ'ଣ ଆପଣଙ୍କର ଦୀନ-ସନ୍ତାନ ନୋହୁଁ ? ଦୀନ, କ୍ଷୀଣ ପୁତ୍ରମାନଙ୍କୁ ନିରାଶ୍ରୟ କରି, ପିତାର କ'ଣ ସ୍ୱେଚ୍ଛାମତେ ଚାଲିଯିବା ଉଚିତ ।

ଗୋବିନ୍ଦ—ଭୁଲିଥିଲି, ଭ୍ରାତୃଗଣ ! ଏ' ସଂସାରରେ ମୋର କର୍ତ୍ତବ୍ୟ ଶେଷ ହୋଇନାହିଁ— ଭୁଲି ଯାଇଥିଲି ଯେ ଜୀବନ ଥିବାଯାଏ ମନୁଷ୍ୟର କର୍ତ୍ତବ୍ୟ ଶେଷ ହୁଏ ନାହିଁ; କିନ୍ତୁ

ତୁମ୍ଭମାନଙ୍କର ବୁକ ତଳେ ଲେଶମାତ୍ର ଅନୁକମ୍ପା ହେଉନାହିଁ ? —ତା'ର କି ଆଉ ଶକ୍ତି ଅଛି—ନିଜ ସ୍ୱାର୍ଥପର୍ଯ୍ୟନ୍ତ ବହନକରିବାର ସାମର୍ଥ୍ୟ କି ଅଛି ? (ନେପଥ୍ୟେ)—ଅଛି ।

ଗୋବିନ୍ଦ—ଅଛି ?

[ସମସ୍ତେ ସେହିଆଡ଼କୁ ଚାହିଁଲେ—ଅର୍ଜ୍ଜୁନ ଓ ରଙ୍ଗିଲ ସହ ବୀରେନ୍ଦ୍ର ପ୍ରବେଶ କଲେ]

ବୀରେନ୍ଦ୍ର—ଏହି ଯେ ଆପଣଙ୍କର ଶକ୍ତି ଓ ସାମର୍ଥ୍ୟ, ପ୍ରଭୋ !

[ ଅର୍ଜ୍ଜୁନ ଓ ରଙ୍ଗିଲ ଗୋବିନ୍ଦଙ୍କୁ ପ୍ରଣାମ କଲେ—ଗୋବିନ୍ଦ ଅର୍ଜ୍ଜୁନକୁ ଆଲିଙ୍ଗନ କରି ରଙ୍ଗିଲର ମସ୍ତକ ଆଘ୍ରାଣ କଲେ । ]

ସମସ୍ତେ—(ଆନନ୍ଦରେ) ଜୟ ମହାରାଜ ଗୋବିନ୍ଦ ବିଦ୍ୟାଧରଙ୍କ ଜୟ ! ଜୟ ଯୁବରାଜ ଅର୍ଜ୍ଜୁନ ବିଦ୍ୟାଙ୍କର ଜୟ ! ଜୟ ଯୁବରାଜଙ୍କ ଜୟ !

ଗୋବିନ୍ଦ—ଜଗନ୍ନାଥ ! ଏ' କି ଲୀଳା ତୁମ୍ଭର ?—ବୀରେନ୍ଦ୍ର ଏ' କି ବିଚିତ୍ର ଘଟଣା ? ମୁଁ ଯେ କିଛି ବୁଝିପାରୁ ନାହିଁ !

ବୀରେନ୍ଦ୍ର—ମହାରାଜ ! ଯେଉଁ ସମୟରେ ଏ' ଆପଣମାନଙ୍କୁ କେତେକ ରକ୍ଷୀ ଧରି ଯେଉଥିଲେ ଠିକ୍ ସେହି ସମୟରେ ପାପିଷ୍ଠ ଗୋବର୍ଦ୍ଧନ ଓ ପାପିଷ୍ଠା ପଦ୍ମା ସେନାପତି କର୍ତ୍ତୃକ ଧୃତ ହୁଅନ୍ତି ।

ମୁକୁନ୍ଦ—ଭ୍ରମବଶତଃ ତା' ହେଲେ ଏ ଆପଣମାନଙ୍କୁ ସୈନ୍ୟମାନେ ବନ୍ଦୀକରି ବନ୍ଦୀଶାଳାରେ ରଖିଥିଲେ ?

ଗୋବିନ୍ଦ—ମୁକୁନ୍ଦ ! ତୁମେ କଣ ମୋର ଆଦେଶ ପାଇ ସେଠାକୁ ଯାଇ ନ ଥିଲ ?

ମୁକୁନ୍ଦ—ପ୍ରକୃତ ଆସାମୀଗଣ ଧରା ପଡ଼ିବାରୁ, ମୁଁ ନିଜେ ଯିବା ଅନାବଶ୍ୟକ ମନେକରି ସୈନିକଙ୍କୁ ନିର୍ଦ୍ଦୋଷ ବନ୍ଦୀଙ୍କୁ ମୁକ୍ତ କରି ଦେବାକୁ ଆଦେଶ କରିଥିଲି ।

ବୀରେନ୍ଦ୍ର—ମୁକ୍ତି ଲାଭକରି, ଏ' ଆପଣମାନେ ମହାନଦୀର ଗୋଟିଏ ନିର୍ଜ୍ଜନ-କୂଳରେ ଉପବେଶନ କରିଥିଲେ—ମୁଁ ଆତ୍ମହତ୍ୟା କରିବାକୁ ଯିବାବେଳେ ଦର୍ଶନ ଲାଭ କଲି—

ଗୋବିନ୍ଦ—ଜଗନ୍ନାଥ ' ତୁମ୍ଭର ଉଦ୍ଦେଶ୍ୟ ତୁମ୍ଭଙ୍କୁ ହିଁ ଜଣା ! ହାୟ ! ଆଜି ଯଦି ରାଜ-ପରିବାରବର୍ଗ ଜୀବିତ ଥାଆନ୍ତେ - !

ରଙ୍କେତୁ—ଜୟ ମହାରାଜ—

ଗୋବିନ୍ଦ—ନୀରବ ହୁଅ, ଭ୍ରାତାଗଣ ! ସେପରି ସମ୍ବୋଧନ କରି ଆନନ୍ଦ-ଉଲ୍ଲାସ ପ୍ରକାଶ କରନାହିଁ ।—ମୁଁ ଦୀନ ଦାସ ମାତ୍ର—ଆସ ସମସ୍ତେ, ଶୋକସନ୍ତପ୍ତ ହୃଦୟରେ ରାଜ-ପରିବାରଙ୍କ ସଦ୍‌ଗତିକାମନା କରି ପ୍ରାର୍ଥନା କରିବ । ଆସ !

[ ସମସ୍ତେ କର ଯୋଡ଼ିକରି ଊର୍ଦ୍ଧ୍ୱକୁ ନୀରବେ ଚାହିଁ ରହିଲେ ]

— ଯବନିକା —